# ବେସରକାରୀ ଇସ୍ତାହାର

( ପରୀକ୍ଷାମୂଳକ ସାମାଜିକ ନାଟକ )



ଜାନକୀବଲ୍ଲଭ ମହାନ୍ତି
ପ୍ରାଧ୍ୟାପକ
ମହାରାଜା ପୂର୍ଣ୍ଣଚନ୍ଦ୍ର ମହାବିଦ୍ୟାଳୟ
ବାରିପଦା

# ନାଟକ ସମ୍ବନ୍ଧରେ ଦୁଇପଦ

"ବେସରକାରୀ ଇସ୍ତାହାର"ର ଜନ୍ମ ୧୯୭୩ ମସିହାରେ । ଭାରତ ସରକାରଙ୍କ "ତଥ୍ୟ ଓ ବେତାର ମନ୍ତ୍ରଣାଳୟ"ଙ୍କ ଆନୁକୂଲ୍ୟରେ ନାଟକଟି ପରିବେଷିତ ହୋଇଥିଲା ।

ଏହି ନାଟକରେ, ମୋର ମନେହୁଏ, 'ପରିବାର କଲ୍ୟାଣ'ର ଆଭିମୁଖ୍ୟ ଅଧିକ । ତୀକ୍ଷ୍ଣ ଦୃଷ୍ଟିକୋଣରୁ ଆଲୋଚନା କଲେ ଜଣାପିବ ଯେ ନାଟକରେ ପରିବାର ନିୟନ୍ତ୍ରଣକୁ ସିଧା ସଳଖ ଭାବରେ ଉପସ୍ଥାପିତ କରାଯାଇ ନାହିଁ; ବରଂ ଆଠଟି ସନ୍ତାନର ଜନକ ହୋଇ ରମେଶ ଗର୍ବ ଅନୁଭବ କରନ୍ତି । ଆଠଟି ସନ୍ତାନର ପରିବାର ଭରଣପୋଷଣ ଲାଗି, ଉଭୟ ରମେଶ ଓ ତାଙ୍କ ସହଧର୍ମିଣୀ ରେଖା ଚାକିରୀ କରିବାକୁ ବାହାରି ପଡ଼ିଛନ୍ତି । ପରିବାରର କଲ୍ୟାଣ ପାଇଁ ପରିବାରର ସଭ୍ୟମାନେ ଉଦ୍ୟମ କରିଛନ୍ତି । ତେଣୁ ବର୍ତ୍ତମାନ ଭାରତ ସରକାରଙ୍କର ପରିବାର କଲ୍ୟାଣ ଯୋଜନାର ସଙ୍କେତ ଏହି ପୁସ୍ତକ ବହନ କରିଅଛି ବୋଲି ମୋର ବିଶ୍ୱାସ ।

ଏହା ଏକ ପରୀକ୍ଷାମୂଳକ ନାଟକ । କାରଣ ନାଟକଟି ଦୁଇ ଭାଗରେ ବିଭକ୍ତ । ଗୋଟିଏ ଗୋଟିଏ ଭାଗ ନିର୍ଦ୍ଦିଷ୍ଟ ମଞ୍ଚ ସାଜ ସଜା ନେଇ ଦେଖାଦେଇଛି—ସାମାଜିକ ପରିବେଶରେ । କଥୋପକଥନ ମଧ୍ୟରେ ହାସ୍ୟରସ ପରିବେଷଣ କରି, ନାଟକଟିକୁ ଗତିଶୀଳ କରାଇବାକୁ ଉଦ୍ୟମ କରାଯାଇଅଛି । ମାତ୍ର ଦୁଇ ଘଣ୍ଟା ମଧ୍ୟରେ ନାଟକଟିର ଅଭିନୟ ସୀମିତ । ରଙ୍ଗମଞ୍ଚରେ ଏହା ବହୁବାର ପରୀକ୍ଷିତ ହୋଇଅଛି ।

ଭାରତର ରାଜଧାନୀ ଦିଲ୍ଲୀ ସହରରେ ବର୍ତ୍ତମାନ ଏ ପ୍ରକାରର ନାଟକର ଚଳଣି ବେଶୀ । କାରଣ ହେଲା, ନାଟକଟିକୁ ଅଳ୍ପ ସମୟ ଅଭିନୀତ କରାଇ, ପ୍ରଯୋଜକ ତାକୁ ଦର୍ଶକଙ୍କର ଅତି ନିକଟକୁ ଆଣିବାକୁ ଚେଷ୍ଟା କରନ୍ତି । ଅବସର ବିନୋଦନ ଆଭିମୁଖ୍ୟ ନେଇ ଆସୁଥିବା ଦର୍ଶକ ଜନତାଙ୍କୁ, ନାଟକର ପ୍ରଯୋଜକ, ଅଧିକ ଗମ୍ଭୀର ବାୟୁମଣ୍ଡଳ ଭିତରେ ରଖି, ତାଙ୍କର ମସ୍ତିଷ୍କ ଭାରାକ୍ରାନ୍ତ କରିବାକୁ ଇଚ୍ଛା କରନ୍ତି ନାହିଁ ।

ମୋର ଦିଲ୍ଲୀ ଅବସ୍ଥାନ ସମୟରେ ଏ ନାଟକକୁ ମୁଁ ରୂପ ଦେଇଛି । ତେଣୁ ଚଳନ୍ତି ହିନ୍ଦୀ ନାଟକର ପ୍ରଭାବ ମୋ ଉପରେ ପଡ଼ିଥିବା ସ୍ୱାଭାବିକ—ମୁଁ ସ୍ୱୀକାର କରୁଛି ।

ପୁସ୍ତକର ପ୍ରକାଶ ଦାୟିତ୍ୱ ନେଇ କଟକ ପବ୍ଲିଶିଂ ହାଉସର ସ୍ୱତ୍ୱାଧିକାରୀ ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି, ଏହି ପୁସ୍ତକଟିକୁ ଆଲୋକକୁ ଆଣିଛନ୍ତି—ତାଙ୍କୁ ମୁଁ ଆନ୍ତରିକ କୃତଜ୍ଞତା ଜଣାଉଅଛି ।

କଟକ
ଶ୍ରୀଗୁଣ୍ଡିଚା ଯାତ୍ରା
୨୬-୭-୧୯୭୭

ଜାନକୀବଲ୍ଲଭ ମହାନ୍ତି

ଭାରତ ସରକାରଙ୍କ "ପରିବାର କଲ୍ୟାଣ" ଯୋଜନାର ସଙ୍କେତ ଏଥିରେ ପ୍ରତିଫଳିତ ।

## ନାଟକରେ ଦେଖା ଦେଇଥିବା ଚରିତ୍ର

### ପୁରୁଷ

| | |
|---|---|
| ରମେଶ | ଜୀବନ |
| ମଧୁ | ଘଣ୍ଟିଆ |
| ଗୋଲକ | ସ୍ୱାମୁଲ୍ |
| ଜନାର୍ଦ୍ଦନ | ରଙ୍ଗଲାଲ |
| ଶିଖର | ମହେନ୍ଦ୍ର |
| ବରଦା | ଧ୍ରୁବ |
| ନରହର | ବିଷ୍ଣୁ |
| ଓଁକାର | ସାଧୁଚରଣ |
| ମଣିଆ | ସଲିମ୍ |
| ଚରଣ | ରହିମ |

### ନାରୀ

ରେଖା
ମିନା
ସୁମତି
ଗୀତା
ଶୀଲା

———

# ପ୍ରଥମ ଦୃଶ୍ୟ

ଏକ ନିମ୍ନ ମଧ୍ୟବିତ୍ତ ପରିବାରର ଗୃହକର୍ତ୍ତା ରମେଶ ବାବୁ—ଗୃହକର୍ତ୍ତ୍ରୀ ରେଖା ଦେବୀ—ତାଙ୍କ ପରିବାରରେ ଦେଖା ଦେଉଛନ୍ତି ଅଠୋଟି ଶିଶୁ—ଜ୍ୟେଷ୍ଠାକନ୍ୟା ମୀନାକ୍ଷି ( ଡାକ ନାମ ମିନି )—ତା ତଳେ ମଧୁ, ସୁଧୁ ଇତ୍ୟାଦ—

ପରଦା ଉଠିଲା ବେଳକୁ ଦେଖା ଯାଉଥିଲା ରମେଶ ବାବୁଙ୍କର କୋଠରୀ —ଏଇ ଗୋଟିଏ ମାତ୍ର କୋଠରୀ ସେ ଭଡ଼ା ନେଇଛନ୍ତି—ଏଇ ତାଙ୍କର ଶୋଇବା ସ୍ଥାନ—ବସିବା ସ୍ଥାନ ସବୁ କିଛି—ଗୋଟିଏ ପାଖରେ ଚୂଲି ଜଳାଇ ଏକ ପାତ୍ର ବସାଇଥିଲା ମିନି—ଅନ୍ୟ ପଟେ ପିଲାମାନେ ପଢ଼ାପଢ଼ିରେ ଏବଂ ଛୋଟ ଶିଶୁମାନେ ଖେଳିବାରେ ବ୍ୟସ୍ତ ଥିଲେ—

କୋଠରୀର ମଝିରେ ଖଣ୍ଡେ ତକ୍ତପୋଷ—ପାଖରେ ଖଣ୍ଡେ ଚଉକି—

ଘର ଭିତରକୁ ପଶି ଆସିଛନ୍ତି ରେଖା ଦେବୀ—ସେ ସ୍କୁଲର ଶିକ୍ଷୟିତ୍ରୀ କାମ କରନ୍ତି—ସେ ଦିନ ରବିବାର ଛୁଟି—ଅଥଚ କାମର ବ୍ୟସ୍ତତା ଯୋଗୁ ସେ ଯାଇଥିଲେ—କାମରୁ ଫେରିଛନ୍ତି—

ରେଖାଦେବୀ—ବାପା ଗଲେ କୁଆଡ଼େ ?

( ସମସ୍ତେ ନୀରବ )

ରେଖା—ଶୁଣୁଛ ନା ମିନି ? ପଚାରୁଛି ପରା ବାପା ଗଲେ କୁଆଡ଼େ ?

ମିନି—ବାହାରକୁ ।

ରେଖା—ବାହାରକୁ ?

ମିନି—କହୁଛି ପରା ଥରେ ବାହାରକୁ !

ରେଖା—ବାହାରକୁ ମାନେ ?

ମିନି—କହୁଛି ତ ବାହାରକୁ । ଅଉ ବାହାରକୁର ମାନେ ଯଦି ତୁ ନ ବୁଝି ପାରୁ, ତାହେଲେ ବାଧ୍ୟ ହୋଇ ମୁଁ କହିବି out side ।

ରେଖା—ସାବାସ୍ । ଓଡ଼ିଆରେ ନ ବୁଝି ପାରିଲେ ଇଂରାଜୀରେ ବୁଝାଇ ଦେବାର ଚେଷ୍ଟା ।

ମିନି—ତା ଛଡ଼ା ଉପାୟ କଣ—ବୁଝୁଛ, ମୋଟେ ହବା ଉଚିତ ବୁଝିବି—ବିଶେଷତଃ ଦେଶ ସ୍ୱାଧୀନ ହେଲା ପରେ, ଯେଉଁ ଜାତିଟା ଆମକୁ ଶୃଙ୍ଖ ଦେଇଥିଲା ଦେଡ଼ଶହ ବର୍ଷ କାଳ, ସେ ଜାତିର ଭାଷା ବ୍ୟବହାର କରିବାଟା—

ରେଖା—ଚୁପ୍ କର କହୁଛ । ବଡ଼ ବଡ଼ ଦର୍ଶନ ତତ୍ତ୍ୱ ।

ମିନ— ଦର୍ଶନ ତତ୍ତ୍ୱ ନୁହଁ ବୋଉ । ଏ ଦେଶର ଗଠ ହେଉଁଅଛେ—ଦେଶର ନେତାମାନେ ଯେଉଁ ଦଗରେ ଚିନ୍ତା କରୁଚନ୍ତି, ସେଇକଥା କହୁ କ'ଣ ମୁଁ ଭୁଲ କରୁଚ ?

ରେଖା—ମୋଟେ ନୁହଁ । ଗୋଟାଏ କଥା ମୋର—ମୋ ପ୍ରଶ୍ନର ଉତ୍ତର ତୁ ଦବୁ ? ନା ତୋ ପ୍ରଶ୍ନର ଉତ୍ତର ମୁଁ ଦେବ ? ( ଟିକଏ ରହୁ ) ହଁ, ସ୍ୱତନ୍ତ୍ରାଣି ବସାଇ ନାହୁଁ ବୋଧେ—

( ମିନ ଡାଣ୍ଡିଟା ଅଣି ଦେଖାଇଲା—କଣା )

ବାପାଙ୍କୁ କହୁଥିଲୁ ?

ମିନ—ନା ।

ରେଖା—ଅର୍ଥାତ୍ ?

ମିନ—କହୁଲ ପରୁ ସେ ବାହାରକୁ ଚାଲିଗଲେ ।

ରେଖା—ବେଶ୍ ହେଇଚ, ଭଲ ହେଇଚ । ଅଜି ଅଜୁ ଚୁଲ ଜଳି ଫୁଟିବ ନା ଭାତ ଖାଇବ । ଓଃହୋ ? କେତେ କଣ ମଣିଷ କରିବ, ଭାବ ପାରୁନ । ଘରର ସବୁ ଦାୟିତ୍ୱ ଭୁଲଇ ପୁଣି ମଣିଷ ବାହାରକୁ ଗଲ ରୋଜଗାର କରିବାକୁ—

( ପଶି ଅସିଚନ୍ତି ରମେଶ ବାବୁ )

ରମେଶ—Exactly ରେଖା । ସେଇଟି ତମର ହିସାବ କତାବଟା ଟିକଏ ଏପଟ ସେପଟ ହୋଇଗଲା—ତରକାରିରେ କେତେ ଲୁଣ କେତେ ମସଲା ପକାଇବାକୁ ହବ ତେମେ ଜାଣିଲ, ଅଥଚ ଏଇ କଥାଟାକୁ ଅଗରୁ ହିସାବ କରି ଦେଖି ପାରିଲ ନାହିଁ ?

ରେଖା—ଅର୍ଥାତ୍ ?

ରମେଶ—ତମେ କହ ।

ରେଖା—ତମେ କଣ କହୁବାକୁ ଚାହଁ, ମୁଁ ଚାକିରି କରି ଭୁଲ୍ କରଚ ?

ରମେଶ—ତମେ ଜାଣେ ଭବ—ଅମର ଦଶଜଣଙ୍କର ସଂସାର—ମୁଁ ପାଉଚ ଦରମା ୧୭୫ ଟଙ୍କା—ଜଣେ ଚାକିରା—ସେ ଟଙ୍କା ଅଣ୍ଟୁଲା ନାହିଁ ସତ, ମାତ୍ର ଅବସ୍ଥା ସୁଧାରିବ ବୋଲି ତମେ କଲ ମାଷ୍ଟ୍ରାଣୀ ଚାକିରି ୬୫ ଟଙ୍କାରେ । ଅବସ୍ଥା କଣ ସୁଧୁରିଲା, ତମେ ଭାବ ।

( ରେଖା ଧୁମ୍ ମାରି ବସିଲେ ଖଟ ଉପରେ—ବାହାରୁ ପାଟି ଶୁଭିଲା "ରମେଶ ବାବୁ ଅଛନ୍ତି ?" )

ନମସ୍ତେ ଅଜ୍ଞ । ଅସନ୍ତୁ ।

( ପଣି ଅସିଲେ, ପଚ୍ଛୋଣୀ ବନ୍ଦ୍ୱେଦୀ ବାବୁ )

ରମେଶ—( ଉଠିପଡ଼ିଲେ ) ଆସନ୍ତୁ ଆସନ୍ତୁ ବନ୍ଦ୍ୱେଦୀ ବାବୁ ? ଅରେ ଆପଣ ପୁଣି ପଗ୍ଭରୁଥିଲେ କାହିଁକି ?

ବନ୍ଦ୍ୱେଦୀ—ନା ବାହାରେ ଦେଖିଲି ଯେ ତମର Name plate ରେ ଲେଖା ହୋଇଛି Out । ଏବ୍ଲୁ ତମେ ଯେ ଘରେ ।

ରମେଶ—ଓଃ ? ବୁଝି ପାରିଲେ ନାହିଁ ନା ? ମାନେ ଆପଣଙ୍କର କଥା ମୁଁ 'In' ହୋଇ 'Out' କରୁଛି କିପରି ? ଶୁଣନ୍ତୁ—କହୁଛି ସୋଜାକଥା—Very simple—ମୋର Principle ହେଲା, ଘର ଭିତରେ ଥିଲାବେଳେ, ଏଇ ସବାଳେ ଅଲ୍ପ ସଂକରେ Out କରିବା—ତାହେଲେ ଘରେ ଅଲ୍ପ ଲୋକ ଭିଡ଼ ହେବ ନାହିଁ । ଦେଖୁନାହାନ୍ତି, ଖାଲି ଏମିତି Ordinary lifeରେ ଏତେ ଲୋକ ଭିଡ଼ ଯେ—(ପିଲାଙ୍କୁ ଦେଖାଇଲେ)

ବନ୍ଦ୍ୱେଦୀ—କେତୋଟି ହେଲେ ?

ରମେଶ—ସର୍ବମୋଟ ୮ଟି । One is shortly expected—( ପିଲାଙ୍କୁ ଗୁଣିଲେ )

ବନ୍ଦ୍ୱେଦୀ—ଆଚ୍ଛା ! ମତେ ମୋ ସ୍ତ୍ରୀ କହୁଥିଲେ, ଆପଣ ଭଲ ହାତ ଦେଖି ଜାଣନ୍ତି ।

ରମେଶ—କିଛିଟା ଜାଣେ । ମାନେ ଭଲ କି ମନ୍ଦ କହି ପାରିବନି—ଦେଖାକୁ-ଚେଷ୍ଟା କରେ ।

( ବନ୍ଦ୍ୱେଦୀ ହାତ ଦେଖାଇଲେ )

ରମେଶ—( ହାତ ଦେଖି ) Beautiful—ହବ ତ ! !

( ବନ୍ଦ୍ୱେଦୀ ପୁଣି ବସ୍ତିତ )

ରମେଶ—ନିଶ୍ଚୟ ହବ । Sure, ଏକାବାରେ Sure ।

( ବନ୍ଦ୍ୱେଦୀ ପୁଣି ଗୁଣିଲେ )

ରମେଶ—This is the line ( ପୁଣି ନିରୀକ୍ଷଣ କରେଣି ) I mean exactly this is the line which was necessary—Fine—ନିଶ୍ଚୟ ହବ ।

ବନ୍ଦ୍ୱେଦୀ—କଣ ଦେଖିଲେ ?

ରମେଶ—ବହୁତ ପଇସା । definite—sure—without fail ? ଆଉ ଅଧିକ କଣ ଶୁଣାନ୍ତି ।

ବନ୍ଦ୍ୱେଦୀ—ତ'ଣ ?

ରମେଶ—ସବୁ ଠିକ୍ ଅଛି ।

ବନ୍ଦ୍ୱେଦୀ—ଅରେ କହନ୍ତୁ ନା, ପୁଅ କି ଝିଅ—( ହସିଲେ )

ରମେଶ—( ଏଥର ରମେଶ ଜାଣିପାରିଲା, ବନ୍ଦ୍ୱେଦୀ ବାବୁ କଣ ଶୁଣାନ୍ତି ) ଆପଣ ନିଶ୍ଚୟ ଜାଣିଥିବେ—କନ୍ୟା ପ୍ରଥମେ ହେଲେ ବାପ ହୁଏ ଭାଗ୍ୟବାନ ।

ବସେ୍ୱଦା—ବୁଝନ୍ତୁ ନା ।

ରମେଶ—ପ୍ରଥମ ସନ୍ତାନ କନ୍ୟା—ଅଚ୍ଛା ତାପରେ necessary results—

ବସେ୍ୱଦା—ଅର୍ଥାତ୍ ?

ରମେଶ—ଇତ୍ୟାଦି—ସବୁଥିରେ ।

ବସେ୍ୱଦା—କଣ କହୁଚନ୍ତି ?

ରମେଶ—ଯାହା ଦେଖୁଛ—ଅଉ ବେଶୀ କିଛି କହିବାକୁ ଚାହେଁନା— ଆପଣ କେବଳ watch କରନ୍ତୁ । ସମୟ ଆସିଲେ ଜଣାଇବେ । ଆସନ୍ତୁ । ( ନମସ୍କାର ହେଲେ )

ବସେ୍ୱଦା—ଦୁଇଟା ଟଙ୍କା ଅଛି ନେଇଥାନ୍ତୁ—ବାଙ୍କିଟା— ·

ରମେଶ—ଏଥିରେ ଅଧୀର ହେବାର କିଛି ନାହିଁ—ଏଇଟା ତ ମୋର ବ୍ୟବସାୟ ନୁହେଁ—ଗୋଟାଏ pastitime—ବ୍ୟବସାୟ ବୋଲି ଧରିଲେ offical permission ନେବାକୁ ପଡ଼ିବ—ତାପରେ Incomeକୁ annual statementରେ ଦେବାକୁ ପଡ଼ିବ—for Income tax—( ବସେ୍ୱଦା ହସିଲେ ) ହସନ୍ତୁ ନାହିଁ । Entertainment tax ପଡ଼ିବ—ଆସନ୍ତୁ ( ରମେଶ ନମସ୍କାର କଲେ )

( ବସେ୍ୱଦା ପ୍ରତି ନମସ୍କାର ଜଣାଇ ଗଲେ )

ରମେଶ—( ରେଖା ହାତକୁ ଦୁଇଟଙ୍କା ଧରାଇଲେ ) ନିଅ—ମିନକୁ ପଠାଅ—ଯାଇ ହାଣ୍ଡିଟାଏ ଅଣୁ—ଭାତ ବସାଉ—ଅଉ ପରିବାପତ୍ର କିଛି ବି—

( ରେଖା ମିନକୁ ନୋଟଟା ଦେଲେ—ରମେଶ ପିଲଙ୍କୁ ଚାହିଁଲେ )

ଅରେ ତେମେ ସମସ୍ତେ ବସିଚ କଣ ? ଯାଅ ବାହାରେ ପଢ଼ ବା ବୁଲ— ବକ୍ଷସ୍ଥଏ ବୋଲି ତ ଘର—ତ'ଣ ବାପା ମାଙ୍କୁ କିଛି ସମୟ ପାଇଁ ବି ଏକୋଠି ବସିବାକୁ ଦବ ନାଇଁ ? ଯାଅ—

( ପିଲମାନେ ଚାଲିଗଲେ— )

ରମେଶ—( ରେଖାକୁ ଡାକିଲେ )—ଅସ ପାଖକୁ ଅସ ।

ରେଖା—( ଅଭିମାନରେ ) କାହିଁକି ?

ରମେଶ—ଅରେ ଅସ ବା—ଗୋଟାଏ ଜିନଷ ନିଅ—ତମ ପାଇଁ ଆଣିଚି— ( ବ୍ୟାଗରୁ ବାହାର କଲି ଗୋଟାଏ ପାଉଡ଼ର ଡବା )—

ରେଖା—ଏଇଟା କଣ ହବ ?

ରମେଶ—ଏଇଟାର ଦର୍କାର ତ ଏଇନାଗେ—ଯେବେ ସ୍କୁଲ ବୁଝନ୍ତି—ସେମାନେ ଏଇ ପାଉଡ଼ର ଅଣନ୍ତି ସ୍ତ୍ରୀର ଯୌବନ ଥିଲାବେଳେ—

ରେଖା—ଅଉ ତମେ ?

ରମେଶ—ମୁଁ ବୁଝେ ଯାହା ମଣିଷର ବୁଝିବା ଉଚିତ—ବୟସ ଖସିଗଲେ ପାଉଡ଼ର, ଦର୍କାର ଅନ୍ତତଃ ରୁଖ୍ଟାକୁ ସଜାଡ଼ିବା ଲାଗି। ଆରେ କାଅନା—ଆସ ପାଖକୁ ଆସ—କେତେ ଯତ୍ନରେ ମୁଁ ଆଣିଛି।

( ରେଖା ବାଧ୍ୟ ହୋଇ ପାଖକୁ ଆସିଲେ )

ରେଖା—ସବୁଲ, ନା ଆଉ କିଛି ଅଛି ?

ରମେଶ—ଏଁ ?

ରେଖା—( ବସିଲେ ) ଘର କଥା କିଛି ବୁଝୁଚ ?

ରମେଶ—ମୋର ବୁଝିବା ଦର୍କାର କ'ଣ ? ତମେ ତ ଅଛ—

( ବାହାରୁ ପାଟିଶୁଭିଲା—"ବାବୁ ଘରେ ଅଛନ୍ତି ?" ଉତ୍ତରକୁ ଅପେକ୍ଷା ନକରି ଆସିଛି ଗଉଡ଼ ମଣିଆ )

ରମେଶ—ଅରେ, ମଣିଆ ବନ୍ଧୁ, ଆଜି କଣ ଭେଟ ହେଲା ନା କଣ। ଓହୋ ? ପିଲାବୁଡ଼ାକ ଏ ଯାଏଁ ଦୁଧ ପିଇ ନାହାନ୍ତି। ଦେ ଦେ ଦୁଧ ରଖିଦେଇ ଯା—ଛୁଟା ହେଲୁ କାହିଁକି ?

ମଣିଆ—ଆଉ କେତେ ଦିନ ଏମିତ ଚଳିବ ବାବୁ ?

ରମେଶ—ମାନେ ?

ମଣିଆ—କେତେ ଦିନ ଏମିତ ମୁଁ ଚଳାଇ ପାରିବି ବାବୁ !

ରମେଶ—(କଥାକୁ ବୁଲାଇ ଦେଇ) ଓଃ ? ବାପ୍‌ରେ ବାପ୍ ଏଇଟା ଦୁଧରେ ଏତେ ପାଣି ମିଶାଉଛୁ—ମିଛ ଅମ ଅଫିସର ଗୋବର୍ଦ୍ଧନ ବାବୁ ଆଉ ଜନାର୍ଦ୍ଦନ ବାବୁ ଦହନ୍ତି ଦମ୍ଭେ କହୁଥିଲେ, ତାଙ୍କ ସାଇ ବାଗିଆ-ଠାରୁ ଦୁଧ ଅଣିବାକୁ। ହେଲେ ମୁଁ କହିଲି, ନା ନା ମଣିଆଟା ଆମର କାଠଦନିଆ ଗଉଡ଼—ତାକୁ ମୁଁ ଛାଡ଼ିବି ନାହିଁ।

ମଣିଆ—ତମେ ମତେ କଣ ଛାଡ଼ିବ ବାବୁ ? ମୁଁ ତ ତମକୁ ଛାଡ଼ିବାକୁ ବସିଲିଣି—

ରମେଶ—ଜାଣେ, ତୁ ତ କଷ୍ଟରୁ ଛାଡ଼ିଯିବୁ। ନ ଛାଡ଼ି ତୋର ଆଉ ଗତି ଅଛି ନା ? ହଁ ରେଖା ତମର ମନେ ଅଛି ନା। ସେଥର ଗ୍ରୀଷ୍ମରେ ଏଇ ମଣିଆର ଦୁଧ ପିଇ ଅମ ଜନାର୍ କେମିତ dysentery ହେଲା—ଅରେ ବାପ୍ ରେ ବାପ୍ ! ସ୍ୱତାସ୍ୱତ ଡାକ୍ତରଖାନା ନ ଯାଇ ଥିଲେ, ସରିଥିଲା କଥା। (ମଣିଆକୁ) ହଁ ଅଉ କଣ ତୋର ବାଙ୍କି ଅଛି ? ତୁ ଛାଡ଼ିଦେବୁ—ଅଛ୍ଚୁ ? ଏଇ ମୁହୂର୍ତ୍ତରୁ ? ଏଇଆ ତ ? ମୁଁ ଅନ୍ୟ ବନ୍ଦୋବସ୍ତ କରିବି ତ ?

ମଣିଆ—ତମେ ଯାହା ଇଚ୍ଛା ତା କର ବାବୁ। ହେଲେ ମୋ ପଇସାତକ ହିସାବ ଦିଅ—

ରମେଶ—ହଉ ଯା ଯା, ପହୁଙ୍କ ମୁଣ୍ଡକୁ ଆସିବୁ ।

ମଣିଆ—କେତେ ଥର ତ ପହୁଙ୍କ ମୁଣ୍ଡକୁ ଆସି ଆସି ଫେରିଲଣି—ଆଉକି ଆସିବ ? କାହିଁକି ? ଏଇ ତାଙ୍କ ଚପ୍ପଲ ପହୁଙ୍କ ଯାଉଛି ।।

ରମେଶ—ଆରେ ସହରକୁ ଦରମା ମିଳିଲା—ସେଇଦିନ ସବୁ ଶେଷ—ତାପରେ ଗୃହିଣୀଙ୍କ ବାଙ୍କା ଚାହାଣି—ମୌଖିକ, ଲିଖିତ ସବୁ—ଏମିତି କରାଣୀ ଜୀବନଟା ଗଲେ ବୋଲି ସାଙ୍ଗ ଦୁନିଆ ଜାଣେ—ଆଉ ତେମେ ପୁଣି କଏ ?

ମଣିଆ—ବର୍ଷକୁ ବର୍ଷ ପିଲା କୁଟୁମ୍ବ ବଢ଼ାଇବାକୁ ତ ଦୁନିଆ କହୁ ନଥିଲା ?

ରମେଶ—ଦୂର ହ, ଦୂର ହ କହୁଚି । ହଇରେ ମୋ ସଂସାର, ମୋ ପିଲା—ମୋ କୁଟୁମ୍ବ ଉପରେ କଥା କହିବାକୁ ତୁ କଏ ? ମୂର୍ଖ । ଯାଉଚୁ ନା ଏଇନେ ?

( ଶଙ୍କିତ ହୋଇ ଚାଲିଗଲା ମଣିଆ )

ରେଖା—ମୁଁ ଶୁଣୁଛି ଏଇ ବସାଟା ଛାଡ଼ି ଚାଲିଗଲେ—

ରମେଶ—କୁଆଡ଼େ ଯିବ ?

ରେଖା—ଶୁଣୁଥିଲି ଏଇ ଗଳିକନ୍ଦି ଛାଡ଼ି main road ଉପରକୁ ଗଲେ—

ରମେଶ—ଏତେଇ ଭଲ ଅଛେ—କେଣ୍ଟ ଅଛେ ରେଖା—ତାହାହେଲେ ମାନେ main roadରେ ଆମକୁ ପରସ୍ତ ପରସ୍ତ କରି ପରଦା ଦେବାକୁ ପଡ଼ିବ—( ରେଖା ଚାହିଁଥିଲା ) ଆରେ ବୁଝିଲ ନାହିଁ । ପରଦା—ପରଦା—ମାନେ Screen—Screen ।

( ପୁଣି ବାହାରୁ ଶୁଭିଲା, "ରମେଶ ବାବୁ ଅଛନ୍ତି" । )

ରମେଶ—ହଁ ନିଶ୍ଚୟ ଅଛନ୍ତି । ଆସନ୍ତୁ ।

( ଆସିଲେ ନରହରି ବାବୁ )

ଓ ନରହରି ବାବୁ ଯେ ? ଆପଣ ହଠାତ୍ ?

ନରହରି—ମୋ ପିଲାଟାର ଦେହ ପାଇଁ ତ ଆପଣଙ୍କଠାରୁ ଔଷଧ ନେଇଥିଲି—ଶୁଣୁଥିଲି ଆଉ ଖାନେ ଦିଖାନ ଔଷଧ ନେଇଥିଲେ—

ରମେଶ—ଖାନେ ଦି ଖାନ କଣ ? ଦର୍କାର ହେଲେ ୨୫ ଖାନ ନେବେ—ହୋମିଓ ପାଥିକ ଔଷଧ ତ ? ବେଶୀ ତ costly ନୁହେଁ ? ହଁ ରେଖା ମୋ ହୋମିଓ ପାଥି ବାକ୍ସଟା ଆଣ ତ ?

( ରେଖା ଖୋଜୁଥିଲା )

ଆରେ ଏଇଠି ତଳିଆ ତଳେ ଯେ, ମୁଁ ପୁଣି ଖୋଜୁଛ । ହଁ ତା ଏଣିଅନା—ନିଅନ୍ତୁ ଏଇ ଗୁଡ଼ାଏ ଔଷଧ—

ନରହରି—କଣ ଦେବି ?

ରମେଶ ଦେଖନ୍ତୁ ଔଷଧ ଦେବା ମୋର ବ୍ୟବସାୟ ନୁହେଁ—ବା ଔଷଧ ପାଇଁ ମୁଁ ଫିସ୍ ଦାବୀ କରିବା ନ୍ୟାୟ ସଙ୍ଗତ ନୁହେଁ—ଏଇଟା ମୋର hobby— hobby ନ କର୍ ଗୃପ୍ ନାହିଁ – Official ହେଲେ Govt. permission— ପୁଣି ବର୍ଷ ଶେଷରେ income ର annual statement ଦିଅ Income tax ପାଇଁ—

( ନରହରି ହସିଲେ )

ରମେଶ—ହସନ୍ତୁ ନାଇଁ, Entertanment tax ପଡ଼ିବ ।

ନରହରି—ଆମ ପୁରୁଣା କଥା ଯଦି ହେଲା, ମାଷ୍ଟ୍ରଙ୍କ ଠଙ୍କା ନ ଦେଲେ ପାଠ ହବନି, ଆଉ ଔଷଧ ପଇସା ନଦେଲେ ରୋଗ ଭଲ ହବନି—ଛଡ଼ନ୍ତୁ ଆପଣ ତ କିଛି କହିବେ ନାହିଁ—ଏଇ କଅନ୍ତୁ ଦୁଇଟା ଠଙ୍କା—ଅସୁଛି—

( ରହୁମେଶ ପ୍ରତି ନମସ୍କାର ଜଣାଇଲେ )

ରମେଶ—ଦର୍କାର ପଡ଼ିଲେ ନିଶ୍ଚୟ ଆସିବେ—ପଇସା ଲାଗି ଭୟ କରିବେ ନାହିଁ ।

( ନରହରି ଗୃଲିଗଲେ )

ଓହୋ ? ସରକାରୀ ଜୀବନ ଯାଉ Secretariatefileରେ—ବେସରକାରୀ ଜୀବନ ଗଲା palmisitry ଆଉ Homeopathyରେ । ଆଉ କ'ଣ ବାକି ରହିଲା ରେଖା ?

( ରେଖାକୁ ଗୃହିଁଲା ବେଳକୁ ରେଖା ନଥିଲେ )

ଆରେ ରେଖା ଗୃଲିଗଲା କୁଆଡେ ? ଅସନା—ରେ-ଖା—

ରେଖା—( ପ୍ରବେଶ କରି ) ପୁଣି କଣ ହେଲା ?

ରମେଶ—କିଛି ହେଇ ନାହିଁ । ତମେ ଗୃଲିଗଲେ କଣ ହୁଅନ୍ତା ନା ହବ ? Better half ଗୃଲିଗଲେ worse half କଣ କରିବ ?

ରେଖା—ବୟସ କେତେ ହେଲା ?

ରମେଶ—ତମେ ଜାଣ ।

ରେଖା—ପିଲା ପିଲ କେତୋଟି ହେଲେ ?

ରମେଶ—ତା ବ ତମେ ଜାଣ ।

ରେଖା—ଏମିତ କହିବାର ଅର୍ଥ ?

ରମେଶ—ତମର ପଗ୍ଲରିବାର ଅର୍ଥ ?

ରେଖା—ଓଃ ? ବୁଝିପାରିଲ ନାଇଁ ?

ରମେଶ—ଖୁବ୍ ଭଲରୂପେ ବୁଝିଛି । ତମ ମୁହଁରୁ ଶୁଣିବା ପାଇଁ ଗୃହେଁ ।

ରେଖା—ଭଲ ହେଲା । ଶୁଣ । ମୁଁ କହୁଚି, ଆଉ କଣ ସେ ବେଳ ଅଛିକି । ଏତେ ବଜାର ବଜର ହେଉଚ କାଇଁକି ?

ରମେଶ—ଦେଖ ରେଖା, ସବୁ ପାଇଁ ବେଳ ଯଦ ଗଢ଼ନାହିଁ, ତେବେ ବଳର ବଳର ହେବା ପାଇଁ ବେଳ ଗଡ଼ିଯିବ କାହିଁକି ? ତା ଛଡ଼ା ଭଲରୂପେ ତମେ ଭାବ ରେଖା, ଏଇ କଥାବାର୍ତ୍ତା, ଏଇ ଥଟ୍ଟା ପରିହାସ, ସତକୁ ସତ ଭାବିଲ, ଏଇଟା କଣ ଜୀବନକୁ ଆଶା ଆନନ୍ଦ ଦଉ ନାହିଁ ? ତମେ କହ ନ କହୁଲେ ବି, ତମର ମନ ନିଶ୍ଚେ କହୁବ, ଅନ୍ତତଃ ଆମେ ଏଇ କଥାବାର୍ତ୍ତା, ଏଇ ଥଟ୍ଟା ତାମ୍‌ସା ଭିତରେ ଜୀବନଟାକୁ ଉପଭୋଗ କରିପାରୁଚୁ—ଟିକିନଖି କରି ଉପଭୋଗ କରି ପାରୁଚୁ ।

( ପ୍ରବେଶ କରନ୍ତି ଖବର କାଗଜ ବାକ୍ସ ଚରଣ )

ରମେଶ—କି ଚରଣ, ଆଜିର ଖବର କାଗଜ ତ ମୁଁ ପାଇନି । ଆଜି କଣ ବନ୍ଦ କି ?

ଚରଣ—ନା, ମୁଁ ବନ୍ଦ କରି ଦେଇଛି ।

ରମେଶ—ମାନେ ତମ ମନକୁ ?

ଚରଣ—ଉପାୟ ନଥିଲା !

ରମେଶ—ଓହୋ, ? ବୁଝିଲି ବୁଝିଲି । ଖବର କାଗଜ ନଅଣ୍ଟ ପଡ଼ିଗଲା—ଆଜି ତମେ ଦେଖିଲ, ମୁଁ ତ ନାଗୁଆ ଘର—ସେଥିପାଇଁ ନିଜେ ନିଜେ କମ୍ପିଟା ନେଇ ବନ୍ଦ କରିଦେଲ—

ଚରଣ—ହଁ ଆଜ୍ଞା, ଏମିତ ନାଗୁଆ ଘର ଥାଇ କେତେ ନ ଥାଇ କେତେ ।

ରମେଶ—ଓହୋ ବୁଝିଲି ବୁଝିଲି, ଆମ ଛୋଟିଆ ଲୋକଙ୍କ ପକ୍ଷରେ କିଏ ? ନାହିଁ ? ହଁ, ବଡ଼ ହାକିମ ହୁକୁମା ଅଛନ୍ତି ?

ଚରଣ—ନାହିଁ ବାବୁ, ସେ କଥା ନୁହଁ ଯେ—ଦନେ ଅଧେ ବାସି ପଢ଼ିଲେ ସିନା ଚଳିଯିବ ?

ରମେଶ—ଅବଶ୍ୟ ।

ଚରଣ—ହେଲେ ତମେ ନିଜେ କହ ବାବୁ, ମାସ ମାସ ବାସିଆ ପଢ଼ିଲେ କଣ ଚଳେଇ ହବ ? କିଏ ବା ଚଳେଇ ପାରିବ ? ମୁଁ ଗରିବ ବାପୁଡ଼ା କଣ ଚଳେଇ ପାରିବ ?

ରମେଶ—ଅରେ ଏମିତ drama କରି ଲାଭ କଣ ? ସିଧା ସଳଖ କଥାଟା ତ କହୁବ, ପଇସା ପାଇନାହିଁ ବୋଲି—

ଚରଣ—Drama ମୁଁ କରୁଚି ନା ଆପଣ କରୁଛନ୍ତି ? ଛଡ଼ନ୍ତୁ । ସିଧା ସଳଖ କହୁଲେ ବି କଣ ମିଳିବ ?

ରମେଶ—ଭଲ ହେଲା, ଯାହା ବା ହେଉଥାନ୍ତା, ତମେ ଯେତେବେଳେ ଆଗରୁ decisionଟା ନେଇ ଆସିଚ, ସେଥିରେ ମୁଁ ମରିଯିବ ପଛେ, କେବେ ତ ଦେବ ନାହିଁ ।

ଚରଣ—ଶେଷକୁ ସେଇଆ ତ ହବ ବୋଲି ମୋର ଧାରଣା—

ରମେଶ—ଅରେ, ମୂର୍ଖ ବଡ଼ି ବଡ଼ି ବେଶ୍ ତ କଥା କହୁଚ । ଅବ କାଲି ସ୍ୱାଧୀନ ଦେଶରେ, ଲୋକଙ୍କୁ ଭଲ ବ୍ୟବହାର କରେଇ ଏଇଆ—

ଚରଣ—ମୂର୍ଖଁରେ ଭଲ ନ କହିଲେ ଶୁଣିବ କଣ ? ପଇସା ଯେତେବେଳେ ମାସ ମାସ ଧରି ରହୁଚି—

ରମେଶ—ଅଜ ତମ ଅଙ୍କ ଜମା ଖୁଲ୍ ନାହିଁ । ଜେତେବେଳେ ସମାଜ ବଦଳରେ ମାତୃଭୂମି—ଜେତେବେଳେ ମାତୃଭୂମି ଜାଗାରେ ପ୍ରଜାତନ୍ତ୍ର—ଜେତେବେଳେ ପ୍ରଜାତନ୍ତ୍ର ନାଆଁରେ କଳଙ୍କ । ପୁଣି କେଉଁ ଦିନ ମଝି କାଗଜଟା ନାଇଁ ତ, କେଉଁ ଦିନ ଖସ୍—ଛ-ଛ-ଛ ଯେତେ ଜଞ୍ଜାଳ ଭୂମର ସବୁ ସହୁ ମୁଁ ତମକୁଇ ନାସ୍ତିଅ କରି ଦେଖୁଚ ଜେତେ ଭୁଲ୍ କରୁଚ ।

ଚରଣ—ଭୁଲଟା ତମ ଅଙ୍କ ମୋଟେ ନୁହେଁ, ସବୁ ମୋ ଅଙ୍କ, ମାନୁଚି । ହଉ, ପଇସାଟା କେବେ ମିଳିବ ।

ରମେଶ—ପହିଲାକୁ ଆସ । ହଁ ଅଜଠାରୁ ଠିକ୍ ମୁତାବକ କାଗଜ ଦବ, ବୁଝିଲ ?

ଚରଣ—ପହିଲା ପରା କାଲି ଗଲା ଅଣ—

ରମେଶ—ମୁଁ ପରା ତମକୁ କହୁଚି ପହିଲାକୁ ଅସ—

ଚରଣ—ଜାବୁ ?

ରମେଶ—ପୁଣି ଅଙ୍କ କଷି ବୁଝାଇ ଦବାକୁ ହବ ? ଅସନ୍ତା ମାସ ପହିଲାକୁ ବୁଝି ପାରିଲ ? ମାନେ ଅଜଠାରୁ ୩୦ ଦିନ ପରେ—ବୁଝିଲ ?

ଚରଣ — ବୁଝିଲି ବାବୁ— ପହିଲାକୁ ଅସିବି ନିଶ୍ଚୟ—ନିଶ୍ଚୟ ଅସିବି ।

( ଚରଣ ଚାଲିଗଲା )

ରମେଶ—ପଇସା ଦବାକୁ କହିଲେ ଦୋଷ—ନ ଦେଲେ ବି ଦୋଷ ।— ( ଟିକିଏ ରହି ) ଅଚ୍ଛା ରେଖା, ଆମ ପୁରୁଣା ଖବର କାଗଜ ଗୁଡ଼ାକ ବିକ୍ରୀ ହେଲା ନା ?

ରେଖା—ହଁ ବିକ୍ରୀ ହେଇ ପରା ମଧୁର ଜନ୍ମ ଦିନକୁ ଖଣ୍ଡେ ନୂଆ ପେଣ୍ଟ ଆସିଲା—

( ପ୍ରବେଶ କରିଚନ୍ତି ମଧୁର ମାଷ୍ଟ୍ରେ ଜୀବନ ବାବୁ
ସେ ମିସନାରୀ ସ୍କୁଲର ଜଣେ teacher )

ଜୀବନ—ମଧୁକୁ ନୂଆ ପ୍ୟାଣ୍ଟ ପିନ୍ଧାଇଲେ କଣ ହବ ରମେଶ ବାବୁ ?

ରମେଶ—ଅରେ ଜୀବନ ବାବୁ ଯେ ? ଅସନ୍ତୁ—ଅସନ୍ତୁ । ଆପଣଙ୍କର ସ୍କୁଲର ନିୟମ ପରା ହଉଚି, ପିଲାଙ୍କୁ ଭଲ ପିନ୍ଧେଇବା ? ପରିଷ୍କାର ପରିଚ୍ଛନ୍ନ ରଖିବା ।

ଘବନ—ହଁ ଅମେ ଶିଖିବୁ ସବୁ ଶିଖିଛୁ—ବିଶେଷ କରି ପରିଷ୍କାର ପରିଚ୍ଛନ୍ନ ରହିବା ସବୁଠୁ ବଡ଼ କଥା ।

ରେଣୀ—ସେଇଥିପାଇଁ ତ ଅଟମ ମିସନ୍ ସ୍କୁଲରେ ଦେଲୁ ।

ଘବନ—କିନ୍ତୁ ତା ବୋଲି ତ ପଇସା ବାକି ରଖିଲେ ଚଳିବ ନାହିଁ—

ରମେଶ—କିନ୍ତୁ ଅପଣଙ୍କର ପବ୍ଲି-ମିସନ୍ ସ୍କୁଲ୍ ?

ଘବନ—ସେଥିପାଇଁ ତ ତାକୁ ଯେତେଟିକା କନ୍‌ସେସନ୍ ଦିଅ ହେବାର କଥା ଦିଅଯାଉଛି—

ରମେଶ—ହଁ ଅପଣଙ୍କ ସ୍କୁଲରେ ପଢ଼ୁ ଅଛୁ, fees ଅଧା ପଡ଼ିବ, ତା ଛଡ଼ା ତାର ନିଜର ଭାଇ—ମାନେ Uterine Brother ପଢ଼ିଲେ ପୁଣି One fourth ହେଇଯିବ ? ସେଇଥି ପାଇଁ ତ ମଧୁ ପଛେ ପଛେ ମୁଁ ସାଧୁକୁ ବି ଦେଲି—

ଘବନ—ସେଥିପାଇଁ Grateful, obliged ସବୁ କହିଛି ? ମାତ୍ର ରମେଶ ବାବୁ ସେଇ One fourth କରି fees ତ ମିଳିବା ଦର୍କାର ।

ରମେଶ—Oh sure ! ଅମେ କେବେ ମନା କରିଚୁ ? ଅପଣ ମଧୁଙ୍କୁ ଡକାଇ ବୁଝନ୍ତୁ ନା ? ଅମେ କଣ କେବେ ତାକୁ fees ଦେବାକୁ ମନା କରିଚୁ !

ଘବନ—ଏଇଟା ପୁଅକୁ ପଚାରି ବୁଝିବା ଦର୍କାର କଣ ? ଯେତେବେଳେ ସେ fees ଦେଇ ନାହିଁ କିମ୍ବା ଅପଣ ନିଜେ ବି ଦେଇ ନାହାନ୍ତି, ସେତେବେଳେ ତ ଅମ fees ବାକିଅ ପଡ଼ିଛି । ଏଥିରେ କଣ କରିବା କୁହନ୍ତୁ ।

ରମେଶ—କଣ ଅଉ କରିବେ ? ପୁଅକୁ ଭଲ ପାଠ ପଢ଼େଇବେ ।

ଘବନ—ମାନେ ?

ରମେଶ—ମାନେ ବୁଝି ପାରିଲେ ନାହିଁ ?

ଘବନ—ଅରେ Explain କରନ୍ତୁ ନା ?

ରମେଶ—( କଥା ବାଁରେଇ ବସିକି ) ଶୁଣନ୍ତୁ explain କରୁଛି, with reference to context—fees ଦେଇକି ଦେଇକି ନିଶ୍ଚୟ ଅପଣଙ୍କର reminder ପୁଣି in person. କିନ୍ତୁ ପାଠପଢ଼ାରେ ମୋ ପୁଅ ସେମିତି କିଛି Improve କରିଛି ବୋଲି ତ ମୋ ମନେ ହେଉନି—

ଘବନ—Splendid ? ମୋର ଅଭିଯୋଗ ଟିକ୍ ଓଲଟା । ତମ ପୁଅ ପାଠପଢ଼ାରେ ବହୁ ଜ୍ଞାନୀ । ଅମେ ବୋଲି ତାକୁ ବରଦାସ୍ତ କରୁଚୁ !

ରମେଶ—ମୋ ପୁଅ କିଛି ଜ୍ଞାନୀ ? ମାନେ ମଧୁ କିଛି ଜ୍ଞାନୀ ? ଏ opinionରେ ଅପଣ ପହଞ୍ଚିଛନ୍ତି କିପରି ?

ଘବନ—ଦେଖନ୍ତୁ, classରେ ମୁଁ ପରୀକ୍ଷା କରି ନିଜେ ଜାଣିଛି—ଅପଣ ପରୀକ୍ଷା ନେବାକୁ ଚାହାନ୍ତି ? ଡାକନ୍ତୁ ମଧୁକୁ—

ରମେଶ—ମଧୁ—ମଧୁ—

( ମଧୁ ଅସିଲ )

କରେ କଣ ତମର teacher କହୁଛନ୍ତି ?

ମଧୁ—କ'ଣ Sir ?

ଯାଦବ—ତମକୁ ସେଦିନ monkeyର figure ଅଙ୍କିବାକୁ କୁହାଗଲା ନା ?

ମଧୁ—Yes Sir !

ଯାଦବ—ଅଉ ତମେ କଣ କଲ ?

ମଧୁ—Sir ? ( ଶଙ୍କିତ ହେଲା )

ଯାଦବ—monkeyର figure ଅଙ୍କି ପାରିଲ ? ଅଙ୍କି ପାରିଲ ? କହନା ଚୁପ୍ ରହିଲ କାହିଁକି ?

ମଧୁ—Sir,

ଯାଦବ—monkey ତମେ ଦେଖି ନାହଁ ?

ମଧୁ—ଦେଖିଛି ସାର୍ ?

ରମେଶ—ଅରେ monky ଦେଖିଚୁ ବା ନ ଦେଖିଚୁ—Sir ତ ସାମନାରେ ବସିଥିଲେ ।

ମଧୁ—(ନୀରବ)

ରମେଶ—ଖଣ୍ଡୁଚ ସର ସାର୍ ଅଗ ସାମ୍ନାରେ ବସିଥେଲେ କି ନାହିଁ ?

ମଧୁ—ହଁ ବସିଥେଲେ ।

ରମେଶ—ବସି ତ ଥେଲେ ! Sirଙ୍କ ଚେହେରାକୁ ଦେଖି ମାଙ୍କଡ଼ଟାଏ ଅଙ୍କି ଦେଇ ପାରିଲୁ ନାହିଁ ? Hopeless—

ଯାଦବ—Hopeless—like father—like son—Hell with you—Bye—

ରମେଶ—Bye—(ଯାଦବ ଗୁଲଗଲେ)

(ଡାକଲେ ରେଖାକୁ)

ରେଖା—ଅସ ପାଖକୁ ଅସ—ଏଇଠି ମୋ ପାଖରେ ବସ ।

(ରେଖା ଶଙ୍କିତ ଅନୁଭବ କଲା)

ଅରେ ପାଖରେ ବସିଲେ କ'ଣ ପାପ ? Is it a crime if the husband wants the wife to sit by his side ?

ରେଖା—ନା । ପାପ ବସିବାରେ କାହିଁକି ? ସ୍ୱାମୀ ସ୍ତ୍ରୀର କୌଣସି ସମ୍ପର୍କରେ ବି ତ ପାପ ନାହିଁ । କି-ନ୍ତୁ—

ରମେଶ—ଓଃ ? ଛାଡ଼ ସେ କିନ୍ତୁ ଫିନ୍ତୁ—ମୁଁ ଗୃହେଁ ପିଲାମାନେ କେହି ନାହାନ୍ତି—ଅଜି ତମେ ମୋ ପାଖେ ପାଖେ ବସିବ । କ'ଣ ଅସିବ ନା ନାହିଁ ?

ରେଖା—ସବୁବେଳେ ତ ଅଛି !
ରମେଶ—ଆଜି ଅଛ ?

(ରେଖା ନୀରବ)

ମୁଁ ଧରି ନେଇଛି ତମେ Electric current—ଛୁଇଁଲେ ମାନେ ମୃତ୍ୟୁ—(ହସିଲେ)—ଏଥର ଅସ !

ରେଖା—(ପାଖକୁ ଆସିଲେ) ତମର ଓକିଲ ହେବା ଉଚିତ ଥିଲା—

ରମେଶ—ହେଇ ପାରିଲି ନାହିଁ—ଯାହା ଅବଶୋଷ ରହିଗଲା, କିନ୍ତୁ ତମର ପାଖରେ ମେଣ୍ଟେଇବି—

ରେଖା—ଏଥର ହାରିଗିଲ !

ରମେଶ—ହାରିଛି ! ଅସ !

( ରେଖା ପାଖକୁ ଅସୁଥିଲା—ବାହାରୁ ଡାକ ଶୁଭିଲା—"ବାବୁ ଘରେ ଅଛନ୍ତି ?" )

ରମେଶ—( ଧୀରେ ରେଖାକୁ ) କାହାର ସ୍ୱର ?

( ପୁଣି ବାହାରୁ "ବାବୁ ଅଛନ୍ତି ପରା ଲାଗୁଛି ?" କହି କହି ଅସିଲା ଧୋବା ଘନିଆ—)

ରମେଶ—( ଘନିଆକୁ ଦେଖି ) କିରେ ଘନିଆ ଯେ ? ହଁ, ରବିବାରକୁ ରବିବାର ତୋର ଅସିବାର କଥା ! ଅଜ ଅସିଛୁ । ମାନେ ଅଜ ବୋଧେ ଅମର କିଛି ଲୁଗାପଟା ପଡ଼ିବାର ନାହିଁ । ଅସନ୍ତା ରବିବାରକୁ ଅସେ—

ଘନିଆ—ନାହିଁ ବାବୁ ଲୁଗା ନବାକୁ ମୁଁ ଅସି ନ ଥିଲି ।

ରମେଶ—ଅଜି କଣ ଲୁଗା ଦବାକୁ ଅସିଥିଲୁ ? ଯଦି ଲୁଗା ଅଣିଛୁ ତ ରଖିଦେଇ ଯିବୁ । ସେଇଠି ରଖି ଦେଇଯା—ମିନ ଦେଇ ନାହିଁ—ସେ ଅସିଲେ ହିସାବ ପତ୍ର କରି ରଖିବ । ତୁ ତ ଜାଣୁ, ମା ରଖନ୍ତି ନାହିଁ—କି ମୁଁ ତାର କୌଣସି ହିସାବ ପତ୍ର ଜାଣେ ନା—

ଘନିଆ—ଲୁଗାପଟା କିଛି ମୋ ପାଖେ ନ ଥିଲା ବାବୁ !

ରମେଶ—ତା ହେଲେ ଯା । ଏ ହପ୍ତା ତୋର ଛୁଟି ।

ଘନିଆ—ବାବୁ !

ରମେଶ—କିରେ କ'ଣ ? ଅଉ କିଛି କହିବାକୁ ଅଛି !

ଘନିଆ—ବାବୁ !

ରମେଶ—କିରେ କ'ଣ ? କଣ ହେଲା ତୋର ? କଣ ଭଲ ନା ମନ୍ଦ !

ଘନିଆ—ଭଲ ମନ୍ଦ ସବୁ ଅପଣଙ୍କ ପାଖରେ ବାବୁ ?

ରମେଶ—ତୋ ଭଲ ମନ୍ଦ ମୋ ପାଖରେ ! ମାନେ ?

ଘନିଆ—ମୋ ଦାଗିଆ ପଇସା ବାବୁ ?

ରମେଶ—ଓଃ ! ଏଇଆ ? କହୁନୁ ସିଧା ସଳଖ କରି ? ଏତେ ବୁଲେଇ ବାଲେଇ କହିବାର ଦରକାର କଣ ? ହଁ, ତୋର ଦାଗିଆ ପଇସାଟା ତ, ପହିଲି ମୁଣ୍ଡକୁ ନେଇଯିବୁ !

ଘନିଆ—ଆଜି ତ ପହିଲିମୁଣ୍ଡ ବାବୁ ? ସେଥିପାଇଁ ତ ଆସିଥିଲି !

ରମେଶ—ହସେଇଲୁ ତୁ ଘନିଆ, ହସେଇଲୁ । ହଇରେ ଆଜି ପହିଲି ମୁଣ୍ଡ ନା ଗଣ୍ଡି । ପହିଲି ମୁଣ୍ଡ କ'ଣ ? ପହିଲି ପରା ଖୋଦ୍ କାଲିଠୁ ଗଲାଣି ?

ଘନିଆ—ହଁ ବାବୁ, କାଲି ତ ପହିଲି ଗଲା !

ରମେଶ—ଆଉ ତୋ ପାଇଁ କଣ ଟଙ୍କା ଅନେଇ ବସିଛି ? ଯିଏ ଆଗେ ଆସିଲେ ଯିଏ ଆଗେ ନେଲେ । ସିନେମା ହଲ୍‌ରେ ଟିକେଟ ପାଇଁ ଯାଇଚୁ ?

ଘନିଆ—ହଁ ବାବୁ, କେତେ ମୁସ୍କିଲରେ ସେଥର ଆଣିଥିଲି ଟିକେଟ !

ରମେଶ—କେମିତି ଆଣିଥିଲୁ ?

ଘନିଆ—ଲାଇନ୍ ଧରି ଠିଆ ହେବାକୁ ପଡ଼ିଲା ବାବୁ !

ରମେଶ—ଯେତେବେଳେ ତୋ ପାଳି ପଡ଼ିଲା, ତୁ ପାଇଗଲୁ, ଏଇଆ ତ ?

ଘନିଆ—ହଁ ବାବୁ !

ରମେଶ—ଏଇଟି ବି ତୋ ପାଉଣା ପାଇବାରେ ସେଇଆ—ଯେ ଆଗ ଆସିଲା, ସେ ତା ପାଉଣା ପାଇ ଚାଲିଗଲା—ତୁ ଆସିଲା ବେଳକୁ ସବୁ ସରିଗଲାଣି—ଭଲ system ନା ? ସବୁଠାରେ ତ ଏଇ ଜାଣିବୁ ? ହଉ, ଆସନ୍ତା ପହିଲି ମୁଣ୍ଡକୁ ତୁ ଆଗ ଆସିବୁ ଯେ, ଆଗ ପାଇବୁ ।

ଘନିଆ—ହଉ ବାବୁ, ଏଇ ମାସ ଶେଷ ଦିନଟି ଆସିବି ।

ରମେଶ—ହଇରେ ଓଲୁ ? ମାସ ଶେଷ ଦିନ ଆସିଲେ ପଇସା କୋଉଠୁ ଆସିବ ? ସେ ଦିନ ତ ପକେଟ ଖାଲି, ଘର ଖାଲି, ମନ ଖାଲି—ସବୁ ଖାଲି । ଆଉ ତୋ ପାଇଁ ପଇସା କୋଉଠୁ ଆସିବ ?

ଘନିଆ—ମନେ ରହିଲା ବାବୁ ! ଆସନ୍ତା ପହିଲି ଦିନ ବଡ଼ ସକାଳୁ ଆସିବି ।

ରମେଶ—ପୁଣି ସେଇ ଓଲୁ କଥା । ହଇରେ ପହିଲି ଦିନ ବଡ଼ ସକାଳୁ ଟଙ୍କା ଆସିବ କୁଆଡ଼ୁ ? ପହିଲି ସଞ୍ଜକୁ ପରା ଦରମା ମିଳିବ ?

ଘନିଆ—ଠିକ୍ ଅଛି ବାବୁ ! ପହିଲି ସଞ୍ଜକୁ ମୁଁ ଆସିବି—

ରମେଶ—ହଁ ତୋର Chance ନବୁ— ଭାଗ୍ୟରେ ଛକା ହୋଇ ପାରିଲେ ହେଲା—

( ଘନିଆ ନମସ୍କାର ହୋଇ ଚାଲିଗଲା ) ।

Hopeless—ମଣିଷ ପିଲାଙ୍କୁ ବାହାରକୁ ପଠେଇ ଟିକିଏ ଏକେଲା ବସିବାକୁ ଚାହିଁଲେ ବି ଏତେ ଗଣ୍ଡଗୋଳ—(ରେଖା ପ୍ରବେଶ)

ଆସ ନା ରେଖା—

ରେଖା—ଭଗବାନ ବଞ୍ଚେଇଛି—ସେଥିପାଇଁ ସେତ ଯିବା ଆସିବା ଲାଗିଛି ।

ରମେଶ—ଓଃ, ବୁଝିଲି । ଲାଜ କଥା ବୋଲ୍, ବୁଝେଇ କରି କହୁଛ, ନାହିଁ ? ମାନେ ତମେ କହୁଛାକି ଗୃହିଣୀ, ଆମର ଆଠଟି ପିଲା ? କିନ୍ତୁ ମୁଁ କଣ ବୁଝେନି ଜାଣ ରେଖା ? ଆମ ପ୍ରଫେସର ଥିଲେ କିନ୍ତୁ ସାହେବ—ସେ କହନ୍ତି Proud father of five—ଆଉ ମୁଁ ନିଜକୁ କଣ ଭାବୁଛି ଜାଣ Able father of eight—ଆଉ ଗୋଟିଏ ହେଲେ କହିବ Noble father of nine.

ରେଖା—ସତ ?

ରମେଶ—କାହାକୁ ? ମତେ, ନା ପିଲଙ୍କୁ ।

ରେଖା—କଥାକୁ ।

ରମେଶ—ତାହେଲେ କଥା ଛାଡ଼, ପାଖକୁ ଆସ, ବସ ।

( ଏତିକି ବେଳେ ବାହାରେ ଗୋଳମାଳ ଶୁଭିଲା—ଘଣ୍ଟି ଆସିଲେ
ରମେଶଙ୍କ ସାନ ପୁଅ ଟୁନା ସହିତ ଦଇଜଣ ତିନିଜଣ
ତାସ୍ ଖେଳୁଥିଲ, ସଲିମ୍ ଓ ରହିମ୍ । )

ସଲିମ୍—ଏଇ ତମ ପିଲା ବାବୁ ?

ରମେଶ—ହଁ, ମୁଁ ତାର ବାପ । କ'ଣ ହେଲା ? ସେଥିରେ ତମର ଆପତ୍ତି ।

ସଲିମ୍—ଆପତ୍ତି କିଛି ନାହିଁ ବାବୁ । ଲେକିନ୍ ଦେଖନା ବଡ଼ ଓସ୍ତାଦ ଅଛି ।

ରମେଶ—ଓସ୍ତାଦ୍‌ର ପୁଅ ଓସ୍ତାଦ୍ ହବନି, କଣ ହବ ?

ରହିମ୍—ଶୁଣ ବାବୁ । କଥା ନଶୁଣି କିଛି କହିବା ଭଲ ନୁହେଁ ।

ରମେଶ—କଣ ହେଲା ? କିଛି ଅସୁବିଧା ସେ କଲା ?

ସଲିମ୍—ଅସୁବିଧା ସେ ନ କରିଥିଲେ, ଆମେ ଏଠିକି ଆସିଥାନ୍ତୁ କାହିଁକି ?

ରମେଶ—ମାନେ ?

ରହିମ୍—ଆମ ତାସ୍‌ଖେଳ ଜାଗାରେ ଦୌଡ଼ କୁଦ—

ରମେଶ—ଟୁନା ।

ଟୁନା—ବାପା, ସେମାନେ ଛନ୍‌ପତା ଖେଳ, ଆମ ପଡ଼ୋଶୀ ସଦେଇ ମଉସାଙ୍କ ପଇସା ଭୁଲେଇ ନେଉଥିଲେ—

ରମେଶ—ସଦେଇ ମଉସାଙ୍କ ପଇସା ଭୁଲେଇ ନଉଥିଲେ ? ସଦେଇ ମଉସାକୁ ଗାଁଉଁଲି ଲୋକ ଦେଖି ? କି ଭୁଲ ? ଏଇଟା କ'ଣ ସତ ?

ସଲିମ୍—ଆମେ ପଇସା ଠକି ନଉଥିଲୁ, କି ସେ ଆମକୁ ଠକି ନେଉଥିଲା, ସେଥିରୁ କ'ଣ ମିଳିବ ? ହେଲେ ଏ ପିଲାର ସେଥିରେ ଯାଏ ଆସେ କଣ ?

ରମେଶ—ତମ କଥା ଶୁଣି ମୋର ମନେହଉଛି, ସରକାର Bank nationalise କଲାପରି ରାସ୍ତାଘାଟ ବି nationalise କରିବେ—ଆଉ କରିବା ଦରକାର ବି ପଡ଼ିବ ।

ରହମ୍—ତେମେ କ'ଣ ଜାଣନା ବାବୁ ଗୁଣ୍ଡାଗାହ Public property.

ରମେଶ—Public Property ବୋଲି ତ ସେଠି ଚକୁଆଡ ଖେଳବା ଉଚିତ୍ ନୁହେଁ । ହଜ ଯାଅ ଯାଅ—ଭଲରେ—ନହେଲେ—

ରହମ୍—War କରବ War ?

ରମେଶ—ଭାରତ ନୁହେଁ—ଅନ୍ୟ ଦେଶ war କଲେ, ଭାରତ detend କରବ—ଏବେ ହେଲ ଅଦର୍ଶ—ତମ ସାଙ୍ଗେ ବେଶୀ ଗପିଲେ energy ନଷ୍ଟ—ଛଡ଼—ତେମେ ସବୁ ତ ସିଗାରେଟ୍ ଖାଉଥିବ—ଟିକେ match box ଦେଖି—

( ସଲମ୍ ମାଚ୍ ବକ୍ସ କାଢ଼ିଲ—ରମେଶ ସେଇଟା ଫୋସାଡ଼ଦେଇ ରେଖାକୁ—ଇଙ୍ଗିତ ଦେଇ ଚୂଲ ଜଗାଇବାକୁ— )

ସଲମ୍—କ୍ୟା ଦୋସ୍ତ ?

ରମେଶ—ଫରକ୍ ଅଛ, ତମେ Envelope—ମୁଁ Postcard—

( ରେଖା ଚୂଲ ଜଳାଇ ଦିଅସିଲଟା ଫେରାଇ ଦେଇ—ରମେଶ ତାକୁ ଦେଇଦେଇ ରହମ୍କୁ )

ସଲମ୍—ମାନେ ?

ରମେଶ—ବୁଝି ପାରଲ ନାହିଁ ? ତମେ ଲ୍ଦଫେଇ କର ଠକୁଚ—ଦରକାର ହେଲେ ମୁଁ ଦେଖେଇ କର ମାରୁଛି ।

ସଲମ୍—କ୍ୟା ଦୋସ୍ତ ଅବ treaty ହୋଗିଅ ନା ? ସନ୍ଧି—ସନ୍ଧି ।

ରମେଶ—For the present—ଅସ ।

( ସଲମ ଓ ରହମ ଗୁଲଗଲେ )

ରମେଶ—ଯା ଟ୍ନା, କୋଉକୁ ଡାକ ଦେ ତ ?

( ଭିତରୁ ରେଖା ଓ ବାହାରୁ ସୁମନ୍ତ ଓ ଶିଖର ଅସିଚନ୍ତି—ସୁମନ୍ତ ରମେଶଙ୍କର ଦୂରସମ୍ପର୍କୀୟ ଭାଇଜ—ଶିଖର ତାଙ୍କର ପୁଅ—ଏକାବେଳେକେ ନୂଆ styleରେ hippie ପର ବେଶ )

ଅରେ, ସୁମ ଭାଇଜ ଯେ ? ହଠାତ୍ ତେମେ କୁଆଡ଼େ ?

ସୁମନ୍ତ—ପାଦ ପକ୍ସ ପକ୍ସ ବୁ ଯଦ ଚାର୍ଜ କାରଣ ପଗ୍ଭରଲୁଣି, ତା ହେଲେ ହେଇ—ଯାଉଛ, ଅଉ କାହିଁକ ?

ରମେଶ—ଅରେ ନାହିଁ ମ ଭାଇଜ ? ମୁଁ କହୁଥିଲି କ ଅମେ ହଠାତ୍ ମନେ ପଡ଼ିଲୁ କିପରି ?

ସୁମନ୍ତ—କେତେ ବାଟରେ କଥା କହୁଛ ? ହଇରେ ଚୂଁଟା ବଅର ହେଇ, କେତେଥର ଭାଇଜକୁ ମନେ କରିଚୁ ?

ରମେଶ—ନାହିଁ ମ ଖୁଡ଼ୀ, କେଉଁ ମିଳୁଣି ବୁଝିଛ ? ଏଇ ଦେଖୁନ, ଘରେ ଏତେ ଲୋକ ଭିଡ଼ ଯେ ?

ସୁମତି—କେତୋଟି ହେଲେ ?

ରମେଶ—ମାତ୍ର ଅଠଟି । One is shortly expected । ମାନେ ଗୋଟିଏ ଶୀଘ୍ର ଆସୁଛି । ଛାଡ଼ ଖୁଡ଼ୀଙ୍କ ତମ କଥା କହ ।

ସୁମତି—ବୁଝିବଟି ରମୁ । ତେମେ ତ ବୁଝିବାର ମଣିଷ । ତେମେ ଜଣାପ କର, ଏ ଶିଖର ତ ଅଧି ଦରବୁଢ଼ା ହେଲା, କେବେ ବାହା ହବ ?

ରମେଶ—କି ଶିଖର ?

ଶିଖର—ବାହାଘର, marriage ? ଅଣ କାଳ ଯୁଗରେ ? କଣ ଦର୍କାର uncle ?

ସୁମତି—ଓ ହୋ ? ଖୁବ ଗାଧଇଛ । ଏତେ ନେହୁରା ହେଉ କହୁଛି ଯେ—ତେବେ ବ ସେଇମିତି—ବାପ ନାହିଁ ବୋଲି, ଏତେ ହନ୍ତସନ୍ତ କରୁଛ ପିନା ?

ଶିଖର—( ଇଂଲଣ୍ଡ styleରେ କହୁଛି ) ଦେଖ ମାମି—ଅଣ କାଳ ବାହାଘରର necessity କଣ ? ମାନେ ଅବଶ୍ୟକତା କ'ଣ ?

ସୁମତି—ଓହୋ ? ହଜ ଷାଠ ପଚ୍ଛଲ ଇଏ ମତେ ? ବାଘ ସତେ ଯେମିତି ସ୍ତ୍ରୀଙ୍କର ପୁରୁଷ ପଣିଆ ବାହାର ପଡ଼ୁଛି—ଯୋଉତ ରୂପ ଭେକ—ବେଶ ଭୂଷା—ବାହାରୁ ସ୍ତ୍ରୀଙ୍କୁ ଦେଖି ମରଦ ବୋଲି କହିବା କଷ୍ଟ । ଦେଖଉଚନ୍ତି ମରଦ ପଣିଆ—

ରମେଶ—କଣ ହେଲା ଖୁଡ଼ୀ ?

ସୁମତି—କଣ ପିଏ କହୁଚନ୍ତି କେଜାଣି ? ମତେ ତ ଆସୁ ନାହିଁ ? କଣ ପରା କହୁଚନ୍ତି mod ?

ଶିଖର—ଓଃ, mod । yes mod । କନୁ ଏଥରେ ଖରାପ ରହିଲା କୋଉଟି—ଯୁଗ mod—ସବୁ mod—ସେଥିରେ ଆମେ mod ହେଲେ କଣ ହେଲା ?

ସୁମତି—କହୁ ହେଲା ନାହିଁ ? ଖାଲି ବାପେ ଯାହା ରହିଲେ ନାହିଁ ?

ଶିଖର—No ମାମି ତମେ ସେମିତି କହ ନାହିଁ । ମତେ ଦୁଃଖ ଲାଗୁଛି । ମାନେ ମୁଁ Sorry feel କରୁଛି । ତମେ ନିଜେ ତମର feeling କହ । ମୁଁ ଶୁଣିବି । I will hear you ।

ସୁମତି—ଆଉ ତମ ଶୁଣିବା ନ ଶୁଣିବାର କଣ ମାନେ ଅଛି ବାବୁ ?

ରମେଶ—ହଁ ଖୁଡ଼ୀ, mod ପରା ହେଲା modern ର ସଂକ୍ଷେପ—

ସୁମତି—ତେବେ କଟକକୁ କହିବେ କଟ୍—ଭୁବନେଶ୍ୱରକୁ କହିବେ ଭୁବ୍ ।

ରମେଶ—ନା ସୁଜନ, Cuttackକୁ କହୁଚେ CTC — Bhubaneswerକୁ କହୁଚେ BBS—

ସୁମତି—ମନ୍ ମନ୍, ଭଲ ପାଠ ପଢ଼େଇନ୍ ମତେ—

ରମେଶ—ବୁଝି ପାରୁନ ନାହିଁ ସୁଜନ । ସଂ ଫର୍ମ କଣ କେବଳ ଏଇଠିରେ ଅଛି ? ମୂଳରୁ ଘସି ଲୋକକୁ ଭେଟିଲେ ଆରମ୍ଭ ହେଲା 'Hai' ଆଉ ବିଦାୟ ନେଉଥିବେଳେ ହେଲା 'Bye', ଡ଼ାଇ, ବାଇ, ଦଶ ଶବ୍ଦ—ଆଉ ଆଗ ଭଳି Good Morrning, Good Night ଏତେ କଥା କହୁଚ କାହିଁ ?

ସୁମତି—ଧନ୍ୟବାଦ—ରମ୍ମ, ଏଇନା ତମର mod ?

ଶିଶିର—ନା mam, ତେମେ ବୁଝି ପାରୁନ ନାହିଁ—ଆଜି କାଲି ଜୀବନଯାତ୍ରା ପଥ ହେଲା short out—ମାନେ ଅଳ୍ପ ସମୟରେ କେମିତି ଚଞ୍ଚଳ ଚଞ୍ଚଳ କାମ ସାରିବା କଥା—ତେଣୁ ଏଗୁଡ଼ାକ ବି short form ହଉ-ଛାଉଡ଼—

ରମେଶ—mam ତମର କଥା ସବୁ ଶୁଣିଲେ—ତମେ ଏବେ ମାମ୍ଙ୍କ କଥା ମାନ—

ଶିଶିର—କଥା ତ ମୁଁ ସବୁବେଳେ ମାନେଁ uncle । କଣ କହୁଚନ୍ତି ଏଇ ମୋର ମୁଣ୍ଡ ଅଛି—

ରମେଶ—ମୋତେ ତୁହଁ, ମୋତେ ତୁହଁ my dear young friend—ମୁଁ ତମର କୌଣସି ଅଂଶକୁ ମୋତେ ଲକ୍ଷ୍ୟ କର ନାହିଁ । ମୁଁ ଲକ୍ଷ୍ୟ କରୁଛ କେବଳ ତମକୁ—

ଶିଶିର—Very correct uncle—You are right—ତେବେ ତେମେ decide କରନା uncle, ଏଇନାଗେ କଣ marriage ର ପ୍ରଶ୍ନ ଉଠୁଚ ?

ରମେଶ—ପ୍ରଶ୍ନ ଉଠୁଚି । କୁଏଡ ଉତ୍ତର ମିଳିବା କଥା ତମେ କହୁଚ ?

ଶିଶିର—Grand uncle—you are really mod—

ସୁମତି—ତମେ କଣ ଔଧ ସଙ୍ଗେ କଣ କୁଅ ବାଇ ହେଉଚ ରମ୍ମ ?

ରମେଶ—ତେମେ ବ୍ୟସ୍ତ ହୁଅ ନାହିଁ ସୁଜନ, ସବୁ ଠିକ୍ ହୋଇଯିବ ।

ସୁମତି—କଣ ଠିକ୍ ହେଉଯିବ, ଆଉ କେତେବେଳେ ? ତମକୁ କଣ ଅଛା ପରିହାସ ଲାଗୁଚ ରମ୍ମ ?

ରମେଶ—କ୍ଷମା କୁହଁ ସୁଜନ । କ୍ଷମା କୁହଁ ।

ସୁମତି—ତେବେ କଣ ମୁଁ ଏମିତ ଏମିତି ଗୁଞ୍ଜିଯିବ ରମ୍ମ ?

ରମେଶ—ଶିଶିର is a good young friend—

ଶିଶିର—There you are uncle—you are perfectly correct । ତମେ ଠିକ୍ କହୁଚ ।

ସୁମତି—ଆଜ ମୁଁ ସିଏ ଦଶମାସ ପେଟରେ ଧରି ଜନ୍ମ କରିଛି, ସିଏ ସବୁ ଭୁଲି କହୁଛି—ହଜ୍, ଖାଲିରେ ଗଣ୍ଡି ପକେଇ ରଖିଲ ରେ ପୁଅ—ଆଜି ପଦ ଦିନେ ତୋର ବାହା କଥା ପାଟିରେ ଧରିଛି ତ ?—

( କହୁ କହୁ ଚାଲିଗଲେ )

ଶିଶିର—It will not be necessary— ଦର୍କାର ପଡ଼ିବ ନାହିଁ—

ରମେଶ—ମାନେ ଅଧେ ଅଧେ ବୋଝୁ ତମ ପାଖକୁ ଚାଲିଆସିବ ଭାଉଜ—

ଶିଶିର—Bye uncle—see you.

( ଶିଶିର ପଛେ ପଛେ ଚାଲିଗଲା )

( ପୁଣି ଫେରି ଆସି ରମେଶ ବସିଲା ଖଟ ଉପରେ )

ରମେଶ—ରେଖା ।

ରେଖା—ପୁଣି କଣ ?

ରମେଶ—ନା ରେଖା, ବୁଝିଲୁ ଦେଖିଲ, ଘରର ମାଲିକ ଆସୁଛି ।

ରେଖା—ଆସୁ, ଏଥିରେ ବ୍ୟସ୍ତ ହବାର କ'ଣ ଅଛି ? ଦର୍କାର ପଡ଼ିଲେ ମୁଁ ଉତ୍ତର ଦେବି ।

( ପାଟି ଶୁଭିଲା ଓଁକାର ସାମନ୍ତର—"ରମେଶ ବାବୁ ଅଛ ?" )

ରମେଶ—ଆସନ୍ତୁ ।

( ଓଁକାର ପଶିଆସିଲେ )

ଓଁକାର—ଅରେ ବାପ୍‌ରେ ବାପ୍ । ଅଛି ବଡ଼ ଭାଗ୍ୟ । ନ ହେଲେ ତ ଯେତେବେଳେ ଆସ ବାବୁ ଘରେ ନାହାନ୍ତି । ବୁଝିଲେ ଯାଇଚନ୍ତି ପଚାରିଲେ ଶୁଣ ଅଫିସ୍‌ରେ । ଅଫିସ୍‌ରେ ପଶିଆସି ଦେଖ ବାବୁ ନାହାନ୍ତି । ବୁଝିଲେ ଯାଇଚନ୍ତି ପଚାରିଲେ ଶୁଣ ସାହେବ୍ ପାଖରେ । ବଡ଼ ଭାଗ୍ୟ । ବଡ଼ ଭାଗ୍ୟ ।

ରମେଶ—କହନ୍ତୁ ।

ଓଁକାର—କଣ ? ତମେ କହିବ ନା ମୁଁ କହିବ ?

ରମେଶ—କୋଉ କଥା ?

ଓଁକାର—ତମ ସାଙ୍ଗରେ ତ କେବଳ ଗୋଟାଏ କଥା । କେତେ ମାସ ଘରଭଡ଼ା ବାକି ରହିବ ?

ରମେଶ—ଆପଣଙ୍କ ଘରେ ରହିବାର କେତେ ବର୍ଷ ହେଲା ?

ଓଁକାର—ମତେ ସେଥିରୁ କଣ ମିଳିବ ? ମୋ'ର ଭଡ଼ା ଦର୍କାର । କେବେ ମିଳିବ, କହ ? କାଲି ତ ପହିଲା ଗଲା, ଆଜି ନବାକୁ ଆସିଛି ।

ରମେଶ—ଆଜି ଘରର ଯେତେ ଯାହା repair କରାଯିବାର କଥା ।

ଓଁକାର—ସାବାସ୍ ରମେଶ ବାବୁ । ଭଡ଼ାକୁ ଭଡ଼ା ବାକି ରଖିବ । ପୁଣି ଭଡ଼ା ମାଗିଲା ବେଳକୁ କହିବ repair । କେଉଁଠା ଘରବାଲା ଏମିତି repair କଲେଣି ନା!, ମୁଁ ଏକା କରିବି ? ମୁଁ ଭଲରେ ପଚାରୁଛି, ଘରଭଡ଼ାଟା ଆଜି ମିଳିବ କି ନାହିଁ ?

ରମେଶ—ଆଜି ?

ରେଖା—ତମେ ବସ, ମୁଁ କହୁଛି । ହଁ ଓଁକାର ବାବୁ, ଆମେ ଏଇ ବଖରାରେ ରୋଷେଇ କରୁଛୁ । ଦେଖୁଛନ୍ତି ତ ?

ଓଁକାର—ସେଥିରେ ମୋର କଣ ଅଛି ? ପଛପଟ ବାରଣ୍ଡାରେ ତ ରୋଷେଇର ବ୍ୟବସ୍ଥା ଅଛି । ଆଉ ତମେ ଯତ୍ନ ନକଲ ।

ରେଖା—ଏତେ ଦିନ ତ କରୁଥିଲୁ ? ଆଜି କାହିଁ ନକରୁଛୁ, ଆପଣ ଜାଣନ୍ତି !

ଓଁକାର—ତା ମୁଁ କେମିତି ଜାଣିବି ? ମୁଁ କଣ ଭଗବାନ୍ ? ସର୍ବଜ୍ଞ ?

ରେଖା—ଆପଣ ଭଗବାନ୍ ନୁହନ୍ତି । ଭଗବାନ୍ ହୋଇଥିଲେ ଏ କଥା ଆପଣ ଜାଣନ୍ତେନି । ମଣିଷ ବୋଲି ଆଉ ବିଶେଷ କରି ଘର ମାଲିକ୍ ବୋଲି ଆପଣ ଜାଣନ୍ତି ।

ଓଁକାର—ମାନେ ତେମେ କହିବାକୁ ଚାହଁ, ବର୍ଷାଋତୁରେ ପାଚେରୀଟା ଖସିଗଲା—

ରେଖା—ପାଚେରୀଟା ଖସି ଯାଉଥିଲେ କିଛି ନଥାନ୍ତା—କିନ୍ତୁ ପାଚେରୀଟା repair ନହେଲେ ଚାଲିବ ?

ଓଁକାର—ଭଡ଼ା ପାଇଲେ ଯାଇ repair ହବ ।

ରେଖା—ନା ସେ କଥା ନୁହଁ ଓଁକାର ବାବୁ । ପାଚେରୀଟା repair ହୋଇଗଲେ, ଭଙ୍ଗାକାନ୍ଥ ପଛପଟୁ ଆଉ ତମ ଟେରେଇ ଦେଖିବାକୁ ମିଳିବ ନାହିଁ ।

ଓଁକାର—କଣ କହୁଛ ତମେ ?

ରେଖା—ହଁ ମୁଁ ଯାହା କହୁଛି ଠିକ୍ କହୁଛି ।

ରମେଶ—କଣ ଓଁକାର ବାବୁ, ଏ ଅଭିଯୋଗ କଣ ଠିକ୍ ?

ଓଁକାର—ମୁଁ କହୁଛି ତମେ ମୋ ଘରଭଡ଼ା ଦେବ କି ନାହିଁ ?

ରମେଶ—ମୁଁ ପଚାରୁଛି ଅଭିଯୋଗ କଣ ଠିକ୍ ?

ଓଁକାର—ମୁଁ ପୁଣି ଭଲରେ କହୁଛି, ମୋ ଘରଭଡ଼ା ଦେବ କି ନାହିଁ ?

ରମେଶ—ପଚାରୁଛି ପରା ଭଲରେ ଓଁକାର ବାବୁ, ଅଭିଯୋଗ କ'ଣ ଠିକ୍ ?

(ପ୍ରବେଶ କରନ୍ତି, ଗୋଲକବାବୁ—ଗୋଲକବାବୁଙ୍କ ପୁଅ
ସହିତ ରମେଶ ଝିଅର ବିବାହ ପ୍ରସ୍ତାବ ଚାଲିଛି—
ଗୋଲକବାବୁ ରମେଶଙ୍କର ସହପାଠୀ—ସେ ଏ
ପାଖରୁ ଶୁଣି ଅବାକ୍ ହୋଇଗଲେ )

ରମେଶ—ଅରେ ଗୋଲକ ? ତୁ ହଠାତ୍ ଏମିତ, କିଛି ଖବର ନ ପଠାଇ ? ଅଗୃନକ ଝଡ଼ବରେ ?

ଗୋଲକ—କଣ ହେଲା ରମେଶ ? କ ଅଭିଯୋଗ ?

ରମେଶ—ନା ସେ କିଛି ନୁହଁ । ହଁ ଓଁକାର ବାବୁ ଆସନ୍ତୁ, ପରେ କଥାବାର୍ତ୍ତା ହେବା । ଗୋଲକବାବୁ ମୋ class mate, ଆସିଚନ୍ତି । ମତେ ଅନ୍ତତଃ କିଛି ସମୟ ବିଶ୍ରାମ ଦିଅନ୍ତୁ ।

ଓଁକାର—ଅଚ୍ଛା; ଗୋଲକବାବୁ ଚାଲିଗଲେ ଆସିବ ।

ରମେଶ—ଆସନ୍ତୁ । ( ବିଦାୟ ଦେବା ଉଦ୍ଦେଶ୍ୟରେ ହାତ ଯୋଡ଼ି ନମସ୍କାର ଜଣାଇଲା ଓଁକାର ଚାଲିଗଲେ ) ଆଜି କଣ ଖବର ଗୋଲକ ? ଏମିତ ହଠାତ୍ ଚାଲି ଆସିଲୁ ଯେ ?

ଗୋଲକ—ନା ଦେଖିଲି ରବିବାର ଛୁଟି । ତୁ ନିଶ୍ଚୟ ଘରେ ଥିବୁ ।

ରମେଶ—ନା ଛୁଟିରେ ମୁଁ ନଥିବାର କଥା—ଆଜି by chance ଅଛି ।

ଗୋଲକ—ଛୁଟିରେ ଘରେ ନଥିବାର କଥା ! ମାନେ ?

ରମେଶ—ମାନେ ରେଖା ଦେବୀଙ୍କ ପଗୃର । ମାନେ working daysରେ ଅଫିସରେ କୋଳାହଳ ଆଉ ଛୁଟି ଦିନରେ ଘରେ ଏତେ ଲୋକ ଭିଡ଼ ଯେ ।

ଗୋଲକ—କଣ କେତେ guest ଆସିଚନ୍ତି ?

ରମେଶ—ଘରେ କଣ hostର ଅଭାବ ଅଛନ୍ତି ?

ଗୋଲକ—ମାନେ ?

ରମେଶ—host ସଂଖ୍ୟା ତ ମତେ ଆଜି ରେଖା ଦେବୀଙ୍କ ମିଶାଇ ଦଶ ।

ଗୋଲକ—ଓଃ, ମାନେ ତୁ କହିବାକୁ ଗୃହୁଁ ତୋର ଆଠଟି ପିଲା—

ରମେଶ—One is shortly expected.

ଗୋଲକ—(ହସିଲେ) ତୋର ଯୋଜ କଥା କହିବାର ଢଂଗୀ—

ରମେଶ—ସେଇ ଗୋଟାକଇ ବଗୃଇ ରଖିଛ—

ଗୋଲକ—ଅଜ ରବିବାର—ଗୋଟାଏ କଥା ବିଗୃର କରିବ ବୋଲି ଆସିଥିଲି—ମିନ କେଉଁଟି ଏ ହେଲା ?

ରମେଶ—ଓଃ ? ମିନାକୁ ତୁ ଏବେ ଦେଖି ନାହୁଁ ନା ? (ଡାକିଲା) ମିନ—ମିନ !

(ମିନ ଆସିଲା)

ମଞ୍ଜୁଷା—ପ୍ରଣାମ କର ।

( ମିନ ପ୍ରଣାମ କରି ଗୃଲିଗଲା )

ଗୋଲକ—ପିଲା ଦିନର କଥା ମନେ ଅଛି ନା ?

ରମେଶ—ମନେ ତ ଅଛି । କିନ୍ତୁ ?

ଗୋଲକ—ମୋ ପୁଅ ସାନେଶ ବି ତେର ବର୍ଷ ହେଲଣି । ତୁ ଚିହ୍ନି ପାରିବୁ କି ନା ସନ୍ଦେହ ?

ରମେଶ—ସାନୁକୁ ମୁଁ ଚିହ୍ନି ପାରିବି ନି ? ଭଲ କହିଲୁ ।

ଗୋଲକ—ନା କହୁଥିଲି ବାହାଘର ପାଇଁ ।

ରମେଶ—କହୁ ।

ଗୋଲକ—ମୁଁ ବି ଠିକ୍ ସେଇକଥା ଭାବୁଚି· ରମୁ । ମୋର ତ Personal objection କିଛି ନାହିଁ । କନ୍ୟାଟି ବି ଏତେ ସୁନ୍ଦର—ଏତେ ଯୋଗ୍ୟ—ଖାଲି ଭାବୁଚି—

ରେଖା—ତେବେ ଆଉ କଣ ଭାବୁଚନ୍ତି ?

ଗୋଲକ—ନା ଭାବୁଚି ଏଇ ମୋ ସ୍ତ୍ରୀଙ୍କ କଥା—ସେ ତମ ଘର ଆଡ଼େ ବୁଲି ଗୁଲି ଆସିବେ ବୋଲି କହୁଥିଲେ—ମୁଁ ଭାବିଲି, ତା ପୂର୍ବରୁ ତମ ଘରଟା ମୁଁ ନିଜେ ଯାଇ ବୁଲି ଗୁଲି ଆସେ—ଆଗରୁ ତ ତୋର ବଡ଼ ହସାର କଥା ଶୁଣିଥିଲି ।

ରମେଶ—( ଦୀର୍ଘ ନିଶ୍ୱାସ ପକାଇକି ) ହଁ ।

ଗୋଲକ—ସେଇଆ ଭାବୁଚି । ସେଇ ହୁଏତ ଗୋଟାଏ objection ହବ ।

ରମେଶ—ବାଳ ସାନୁର ?

ଗୋଲକ—ସେ ବି ଛୋଟିଆ ପିଲା ନୁହଁ । ଆଜିକାଲି ପିଲାଙ୍କ ମତିଗତି । ସେମାନେ କଲେଜପଢ଼ୁଆ ପିଲା—ସବୁ ଦେଖୁଚନ୍ତି, ଜାଣୁଚନ୍ତି ।

ରେଖା—ବାହିକି ଆପଣ ପୁଅକୁ ଥରେ ଝିଅକୁ ଦେଖାଇ ଦେଉ ନାହାନ୍ତି ? ଅଡ଼ୁଆ ଛିଣ୍ଡିଯାନ୍ତା ।

ଗୋଲକ—ମୁଁ ଝିଅକୁ ଦେଖାଇବା କଥା କହୁନାହିଁ ରେଖା ଦେବୀ ।

ରମେଶ—ତେବେ କଣ କରିବା କହ ।

ଗୋଲକ—ନା ମୋର ଏଇ ଆଗ ଛଅଥିରେ କରିବା କଥା । ତା ପରେ ପୁଅକୁ ୨୨ବର୍ଷ ହୋଇଯିବ । ଯୋଡ଼ାବର୍ଷରେ ବିବାହ ତ ମନା । ତେଣୁ—

ରମେଶ—ମୋର ମତାମତ ତୁ କଣ ଶୁଣୁଚୁ କହ । କୋଉ ବିଷୟରେ ?

ଗୋଲକ—ମୁଁ ଠିକ୍ ତତେ ସେଇକଥା ପଚାରୁଚି । କଣ କରିବା ?

ରମେଶ—ତୁ ଯଦି ଭାବୁଚୁ ଯେ ତୋ ପୁଅର ବାହାଘର ନିଶ୍ଚୟ ଆସନ୍ତା ଛଅଥିରେ କରିବୁ—

ଗୋଲକ—ଆରେ ଭାଇ, ମୋ ଭାବିବା ନ ଭାବିବାର କଣ ଅଛି ବାଳ କିଛି ମୂଲ୍ୟ ଅଛି ? ସାନୁ ମା'ଙ୍କର ଯାହା ଇଚ୍ଛା, ମୋର ଇଚ୍ଛା ସେଇଆ—

ରମେଶ—ତେବେ ମତେ ତୁ କଣ କରିବାକୁ କହୁଚୁ କହ ?

ଗୋଲକ—ମୁଁ ପରା ତତେ ସେଇ ପ୍ରଶ୍ନ ପଚାରୁଚି ।

ରମେଶ—ତୁ ମତେ ସେଇ ପ୍ରଶ୍ନ ପଚାରୁଚୁ ?
ଗୋଲକ—ମୁଁ ଶୁଣୁଥିଲି ତୋ ଅଫିସରେ—
ରମେଶ—ଓ କନ୍ୟାପ୍ରାଣ ? ହଁ ଆମ ଅଫିସର ଜନାର୍ଦ୍ଦନ ବାବୁ । ବଡ଼ ସ୍ୱଚ୍ଛଳ ଲୋକ । ତାଙ୍କର ବି ବଡ଼ିକି ଝିଅ, ବଡ଼ ରୂପର ଆଉ ଗୁଣର ବି—
ଗୋଲକ—ରମେଶ !
ରମେଶ—ଅରେ ଏଥିରେ ଅଛି କଣ ?
ଗୋଲକ—ତେବେ ?
ରମେଶ—କିଛି ନାହିଁ, ଏଇଠୁ ଏଇନାଗେ ସିଧା ସିଧା ଯିବା ଜନାର୍ଦ୍ଦନ ବାବୁଙ୍କ ଘରକୁ—ସେ ବି ମତେ କରପାଣ କଥା ପଚାରୁଥିଲେ—
( ଏତିକି ବେଳେ ପ୍ରବେଶ କରିଚନ୍ତି, ରମେଶର ପଡ଼ୋଶୀ ସାଧୁଚରଣ )
କି ସାଧୁବାବୁ ଯେ ?
ସାଧୁ—ହଁ । କାହିଁକି ? ଆସିବାକୁ କ'ଣ ମନା ?
ରମେଶ—ନା ମନା କାହିଁ ଯେ ? ମୁଁ ଠିକ୍ ଖୋଜୁଥିଲି ତମକୁ—
ସାଧୁ—ତମେ ମତେ ଖୋଜୁଥିଲ ?
ରମେଶ—ଗୋଟାଏ କଥାରେ ପରାମର୍ଶ ନେବାପାଇଁ—
ସାଧୁ—ଦେଖ ଦେଖ ମୁଁ ପରାମର୍ଶ ଦେବା ପାଇଁ ଆସିନାହିଁ । ଆଗେ ଖାଇବାକୁ ଦିଅ—
ରମେଶ—କଅଣ ? ଏଇନାଗେ କଣ ?
ସାଧୁ—କାହିଁକି ?
ରମେଶ—ଏତେ ପୁଅ ଝିଅ ହେଲେ ଯେ, ଝିଅ ଛଡ଼ ପୁଅ ହେଲେ ବି ମୁଁ ଆଉ ଖାଇବାକୁ ଦବାକୁ ପ୍ରସ୍ତୁତ ନୁହେଁ ।
ସାଧୁ—ଖାଇବାକୁ ଦେବାକୁ ପ୍ରସ୍ତୁତ ନୁହଁ ? ବେଶ୍ ତେବେ ମିଠା ଖାଇବାକୁ ଦବ ।
ରମେଶ—ହଁ ମିଠା ସେପେଇ ବସାଇଛି । ଗୃଜଳ ଫୁଟିଲେ ଦବ—(ଗୋଲକ ବାବୁଙ୍କୁ ଚାହିଁଲେ )—ଏ ହେଲେ ସାଧୁଚରଣ ଦାସ—ମୋ ପଡ଼ୋଶୀ—ଜଣେ କର୍ମୀ—ମୋ ଭଲମନ୍ଦରେ ମତେ ଉପଦେଶ ଦିଅନ୍ତି—ଆଉ ଏ ହେଲେ ଗୋଲକବାବୁ—ମୋର ସହପାଠୀ—ମୋ ଭାଷାରେ ଗୋଲକ—ନିଜ ପୁଅ ପାଇଁ ପାତ୍ରୀ ଅନ୍ୱେଷଣରେ ବାହାରିଚନ୍ତି—
ସାଧୁ—କାହିଁ ? ତମ ମିଠା ପାଇଁ କରୁ ନ ?
ଗୋଲକ—ଦେଖନ୍ତୁ ସାଧୁବାବୁ । ଆପଣ ରମେଶ ଅଜ ମୋ ଭିତର ବ୍ୟଥାଟା ଜାଣନ୍ତି ନାହିଁ । ସ୍କୁଲରେ ପଢ଼ିବା ଦିନରୁ ଆମେ ଦୁହେଁ ବନ୍ଧୁ । ସେତେବେଳଠୁ ଆମର ସର୍ତ୍ତ ବି ଥିଲା ସେଇଆ । ଆଗ ମୋର ପୁଅ ଆଉ ପରେ

ତାର ଝିଅ ବାହାଘର ହେବ—ସତକୁ ସତ ମୋର ଅଗ ହେଲ ପୁଅ—ତା ପରେ ହେଲ ତାର ଝିଅ—କନ୍ଧ ମଣିଷ ଅବସ୍ଥାର ଦାସ। କଣ କରୁଯାଏ ?

ସାଧୁ— ଦେଖନ୍ତୁ, ମଣିଷ ଅବସ୍ଥାର ଦାସ ବୋଲ ମୁଁ କହୁଚ, ମିଳ ସାଙ୍ଗେ ଅପଣଙ୍କ ପୁଅର ବାହାଘର କରିବାକୁ।

ଗୋଲକ—ଦେଖନ୍ତୁ ସାଧୁବାବୁ, ମୁଁ ଅପଣଙ୍କୁ ବିଶେଷ ଜାଣେ ନାହିଁ—ଏଇ ମାତ୍ର ଦିନକ ଅଗରୁ ରମେଶ ବାବୁଙ୍କର ପଡ଼ୋଶୀ ହିସାବରେ ଯେତିକ ପରିଚୟ ବର୍ତ୍ତିମାନ ଏଇଟିକ—ମୁଁ ଅପଣଙ୍କୁ ଅନୁରୋଧ କରୁଛି, ଅପଣ ରମେଶ ଓ ମୋର ବନ୍ଧୁତା ଜାଣନ୍ତି ନାହିଁ—ରମେଶ ବାହାହେବ ମୋ ସାଙ୍ଗେ ଗୋଟାଏ ଅଢ଼େ—ଶୁଭ କାମରେ—ଅପଣ ଦୟାକରି interfere କରନ୍ତୁ ନାହିଁ।

ସାଧୁ—ଠିକ୍ ଅଛ, ଅପଣ ଅସନ୍ତୁ। ହଁ ରମେଶବାବୁ, ତୁମର ଲଟେରି ଟିକଟ୍‌ର ନମ୍ବର ବାହାରିଛି—Second Prize.

ଗୋଲକ—କଣ କହିଲ।

ସାଧୁ—ଅପଣଙ୍କୁ ନୁହେଁ। ଅପଣଙ୍କର ବନ୍ଧୁ ରମେଶ ବାବୁଙ୍କୁ।

ରମେଶ—କ'ଣ ସାଧୁବାବୁ ? ଥଟ୍ଟା କରିବାକୁ କଣ ଏଇ ବେଳ ପାଇଲେ।

ସାଧୁ—ଥଟ୍ଟା ନୁହେଁ ଏଇ ଦେଖ ଟେଲିଗ୍ରାମ। 489662 ନମ୍ବରର Second Prize

ରମେଶ—ନମ୍ବ'ର ମୋର ମନେ ନାହିଁ। ଟିକଟ ତମେ କିଣିଥିଲ। କେବଳ ଜବର ଦସ୍ତି କରି ମୋଠୁ ଟଙ୍କାଟାଏ ନେଇଥିଲ। ଅଉ ଟିକଟ ବି ତ ତମ ପାଖରେ ଥିଲ।

ସାଧୁ—ସେଇଥି ପାଇଁ ମୁଁ କହୁଚ ଶୀଘ୍ର ଖାଇବାର ଯୋଗାଡ଼ କର—୨୫ ହଜାର ଟଙ୍କା—ଗୋଟାଏ ଦୁଇଟା ନୁହଁ—ଅସେ—

ରେଖା—ସାଧୁବାବୁ !

ସାଧୁ—ଷୋଳ ଶମେତ ଅନ୍ତତଃ କାଣ—ତୁମ ଅଗେ ସାଧୁ କେବେ ମିଛ କହେ ନାହିଁ। ଭୋଜିର ଯୋଗାଡ଼ କର। ଅନ୍ୟ କଥା ପଛେ—

( ସାଧୁ ଚାଲିଗଲେ—ଗୋଲକ ଅବାକ୍ ହୋଇ ରହିଗଲେ)

ରମେଶ—ମୁଁ Just ବାହାରିଲି ଗୋଲକ—

ଗୋଲକ—ଅଉ ରମେଶ—

ରମେଶ—ମାନେ ଅଉ ଯିବୁନାହିଁ ? କାହିଁକ ? କଣ ଡେରି ହେଇଗଲ ? ମୁଁ ଏଇ ବର୍ତ୍ତିମାନ ସାଙ୍ଗେ ସାଙ୍ଗେ ବାହାରି ପଡ଼ୁଛି ଯେ ?

ଗୋଲକ—ମୁଁ ଶୁଣୁଛି, ବାହାଘର ଏଇଟି ନୁଆ ପାତ୍ରର—ଅଉ ପାତ୍ରର ମା ଅସି ଏ ଘର ଦ୍ୱାର ଦେଖିଙ୍କ ବେଳକୁ ସବୁ ଟିକ୍ଠାକ୍ ହୋଇ ଯାଇଥିବ—ମୁଁ ଅସୁଛି ରମ୍—ଅସୁଛ୍ ରେଖା ଦେବୀ । ନମସ୍କାର ।

( ଗୋଲକ ଗୁଲିଗଲେ )

ରମେଶ—କଣ ଶୁଣୁଚ ରେଖା ।

ରେଖା—ସବୁ ମତେ ଅବାକ୍ ଲାଗୁଛି । ମାଡ ସାଧୁ ତ ମତେ କେବେ ମିଛ କହିବେ ନାହିଁ ?

ରମେଶ—ତେବେ ମୋ କଥା ଟିକ୍ ହେଲା—ଅଜ ମିଳର ବାହାଘରର ସବୁ arrangement ହେଇଗଲା—ଏବେ ଅସ—ପାଖକୁ ଅସନା ? ରେ-ଖା ?

(ଏଢକିବେଳେ ମିଳ, ସାଧୁ , ମଧୁ—ବାପା ବାପା କହୁ ଦଉଡ଼ ଅସିଲେ )

ରମେଶ—Oh ? ଖରେ ଅମେ ଏକା ନାହୁଁ । ପିଲାଏ ସମସ୍ତେ ଯେ ଗୁରୁପଡେ ।—Hopeless.

( ପରଦା )



# ଦ୍ୱିତୀୟ ଭାଗ

(ରମେଶ ବାବୁଙ୍କର ପୂର୍ବ ଡ୍ରଇଂରୁମ କୋଠରୀ—ମାତ୍ର କୋଠରୀଟି ନୂତନ ରୂପରେ ସଜ୍ଜିତ—ଡ୍ରଇଙ୍ଗ ରୁମ୍ ସେଟ୍—ପର୍ଦ୍ଦା—ଚଟାଣ ଉପରେ ସୁନ୍ଦର କାର୍ପେଟ—କଣରେ ଟେବଲ୍ ହାର୍ ମୋନିୟମ୍—ମୋଟ ଉପରେ ପୁରୁଣା କୋଠରୀରେ ସମ୍ପୂର୍ଣ୍ଣ ନୂଆ ସାଜସଜ୍ଜା—

ପରଦା ଉଠିଲା ବେଳକୁ ଦେଖାଯାଉଥିଲା, ରମେଶବାବୁଙ୍କ ଝିଅ ମିନ ଓଡ଼ିଶୀ ବେଶରେ ସଜ୍ଜିତ ହୋଇ ଓଡ଼ିଶୀ ନୃତ୍ୟ କରୁଛି—ପାଖରେ ନୃତ୍ୟଗୁରୁ—

ନୃତ୍ୟ ମଝିରେ ମିନର ମା ରେଖା ଦେବୀ ଥରେ ଥରେ ବୁଲିଦେଇଗଲେ—ଉଦ୍ଦେଶ୍ୟ ସବୁ ଠିକ୍‌ଠାକ୍ ଅଛି କି ନାହିଁ—ମନେ ହେଉଥିଲା, ସେମାନେ ଯେପରି କେଉଁ ବଶିଷ୍ଟ ଅତିଥିଙ୍କୁ ଅପେକ୍ଷା କରୁଛନ୍ତି ।

ନୃତ୍ୟ ଶେଷ ହେଲା—ପ୍ରବେଶ କଲେ ରମେଶ ବାବୁ—ସେ ଘର ଚାରିପାଖ ଚାହିଁ ଗଲେ—ଅନନ୍ଦ ଓ ଆଶ୍ଚର୍ଯ୍ୟ ଅନୁଭବ କଲେ— ସ୍ତବ୍ଧ ହୋଇ ଠିଆ ହୋଇଗଲେ କିଛି ସମୟ—)

ରମେଶ—Splendid ! ହଁ ମିନ ! ତୋର ଗଳା କିଏ ?

ମିନ—ଡାକୁ ଦେଉଚ ।

( ପଣି ଅସିଚନ୍ତି ରେଖା ଦେବୀ )

ରେଖା—ଡାକିବା ଦରକାର ନାହିଁ । ( ନାଚମାଷ୍ଟ୍ରଙ୍କୁ ) ଠିକ୍ Set ହୋଇ ଯାଇଛି ତ ?

ନାଚମାଷ୍ଟ୍ରେ—ଏବାବେଳେବେ ଠିକ୍ । ଅଉଥରେ ଦେଖିବେ ?

ରେଖା—ନା ଦର୍କାର ନାଇଁ । ଅଷଣ ଅସନ୍ତୁ । ଦର୍କାର ପଡ଼ିଲେ ଡକେଇ ପଠେଇବ !

( ମାଷ୍ଟ୍ରେ ଗୁଲିଗଲେ )

ରମେଶ—Splendid ରେଖା ? କିନ୍ତୁ ଏ ସବୁ କଣ କିପରି ଯେ ହେଲା ?

ରେଖା—Like husband Like wife—ଯେପରି ସ୍ୱାମୀ, ସେପରି ସ୍ତ୍ରୀ !

ରମେଶ—ମାନେ !

ରେଖା—ଅତି ସହଜ । ଉପଯୁକ୍ତ ସ୍ୱାମୀଙ୍କର ଉପଯୁକ୍ତ ସ୍ତ୍ରୀ ?

ରମେଶ—ତା ତ ଦେଖୁଚ । ମାତ୍ର ହେଲା କେମିତି ।

ରେଖା—ଯେମିତି ସବୁ ଜନସ ହୁଏ ।

ରମେଶ—ଜାଣିଲି, ଲଟେରୀ ଟିକେଟ ଘୋଷଣା ହେଲା ପରେ—

ରେଖା—ତମର ଅନୁମାନ କେତେଟା ଠିକ୍ । କିନ୍ତୁ ସମ୍ପୂର୍ଣ୍ଣ ନୁହେଁ ।

ରମେଶ—ଅର୍ଥାତ୍ ।

ରେଖା—ଲଟେରୀ ଟିକେଟ୍‌ର ଫଂନମ୍ବର ବାହାରିବ । ବଜାରକୁ ଯାଇ ଯେଉଁ ବଡ଼ ଦୋକାନରେ ପଡ଼ିଥିଲେ ବି ତାଙ୍କୁ ଏ ଖବର ମିଳି ଯାଇବ । ସେଥିପାଇଁ କୌଣସି ଦୋକାନରୁ କିଛି ଅଣିବା କଷ୍ଟ ନୁହେଁ—କିନ୍ତୁ—

ରମେଶ—କିନ୍ତୁ ?

ରେଖା—ମୁଁ ସେତକ ବି କରିବାକୁ ଚାହିଁ ନାହିଁ । କେବଳ approvalରେ ସବୁ ଅଣିଛି ।

ରମେଶ—approvalରେ ?

ରେଖା—ହଁ । ଅସୁବିଧା କଣ ?

ରମେଶ—ମାନେ ତମେ କହିବାକୁ ଚାହଁ ।

ରେଖା—Exactly । ଅଜି ଅମର ଦର୍କାର ସବୁଟ୍ ବେଶୀ—ଅଜି ଦର୍କାରଟା କୋଉଟି, ତମେ ତା ଜାଣ—ତା ଛଡ଼ା ପଇସା ହାତରେ ନଥିଲେ ତ କଣି ହବକ ?

ରମେଶ—କିନ୍ତୁ approval ରେ ଆଣି ଫେରେଇ ଦେଇ ହେବ । ସାବାସ୍ ରେଖା ଦେବୀ । Woman thy name is—

ରେଖା—ଥାଉ । ପ୍ରଶଂସା ଦର୍କାର ନାହିଁ । କଣ ମନକୁ ପାଇଲା ତ ?

ରମେଶ—ମନକୁ ପାଇବା ନପାଇବାର ପ୍ରଶ୍ନ ଉଠୁଛି କୋଉଠି ?

ରେଖା—ତା ହେଲେ ଠିକ୍ ଅଛି—ମୁଁ ଜଳଖିଆ ପ୍ରସ୍ତୁତ କରି ଦିଏ—
(ବାହାରୁ call bell ଶୁଭିଲା)

ରମେଶ—ଏଇ ଅସିଗଲେ ବୋଧ ହୁଏ—
ଅସନ୍ତୁ—ଅସନ୍ତୁ
( ଭିତରେ ପଶି ଅସିଚନ୍ତି ତାଙ୍କ ଗୃହିଳ ଦୋକାନର ମାଲିକ ଭଙ୍ଗଲାଲ୍ )

ରମେଶ—ନମସ୍ତେ ସେଟ୍‌ଜୀ । ନମସ୍ତେ, ନମସ୍ତେ ।

ଭଙ୍ଗଲାଲ୍—ନମସ୍ତେ ଜୀ । ନମସ୍ତେ ରମେଶ ବାବୁ ।

ରମେଶ—ହଁ ଅପଣଙ୍କର ଦୋକାନର ହିସାବଟା ମୁଁ ପାଇଛି । ଦେଇପାରିନଥିଲି । ମାସିକିଆ ସଉଦା ଦୋକାନ ତ ? ମୁଁ ନଥିଲି ବେଳେ ବି ସିଏ ନେଇ ଅସିଚନ୍ତି—ବିଲ୍‌ଟା ବଢ଼ିଯାଇଛି । ତେବେ ଟ ୫୦୦ ଙ୍କା ଭିତରେ ତ ? ମୁଁ ଏଇ ଦିନେ ଓଳିଏ ଭିତରେ ପଠେଇ ଦେଉଛି ।

ଭଙ୍ଗଲାଲ୍—( ସେ ରମେଶର ଲଟେରୀ ଟଙ୍କା କଥା ଶୁଣିଚନ୍ତି ) ନା ନା ରମେଶ ବାବୁ । ଅପଣ ଭମାମନେ ଭଭବେ ନାହିଁ ମୁଁ ଟଙ୍କା ମାଗିବାକୁ ଅସିଥିଲି । ଅପଣଙ୍କର ଦର୍କାର ହେଲେ ଅଉ୍ୟ ନେଇ ଅସିବେ । କେତେ

ଟଙ୍କାର ସବୁଦା ଦର୍କାର କହନ୍ତୁ, ପଠେଇ ଦେବ । କଣ ଏବେନେ ସାଙ୍ଗେ ସାଙ୍ଗେ ଦର୍କାର ।

ରମେଶ—ରଙ୍ଗଲାଲ୍ ଜୀ ।

ରଙ୍ଗଲାଲ୍—କହନ୍ତୁ ।

ରମେଶ—ଆପଣ ନା ମୋ ପୁଅ ମଧୁକୁ ଛଳଦଳ କଲେ, ଖାତା ଖଣ୍ଡେ ନ ଦେଇ ଫେରେଇ ଦେଇଥିଲେ ?

ରଙ୍ଗଲାଲ୍—ଶୁଣନ୍ତୁ ।

ରମେଶ—ଆଉ ଶୁଣିବାର କଣ ଅଛି ? ମୋ ପୁଅ ଖାତା ଖଣ୍ଡେ ବାଷ ଆଣିବାକୁ ଯାଇଥିଲା । ଆପଣ ତାକୁ ମନା କରିଦେଲେ ।

ରଙ୍ଗଲାଲ୍—ଦେଖ ରମେଶ ବାବୁ, ସବୁବେଳେ ତ ମୁଁ ଦୋକାନରେ ରହେନା । ମୋ ଦୋକାନର ଅନ୍ୟ କେହି ଜଣେ ମନା କରିଦେଇଥିବ ।

ରମେଶ—ଅସମ୍ଭବ, ମୋ ପୁଅ କ'ଣ ଆପଣଙ୍କୁ ଚିହ୍ନେନା ।

ରଙ୍ଗଲାଲ୍—ହୁଏତ, ସେ କୋଉଁ ପ୍ରକାର ଖାତା ଚାହୁଁଥିଲା, ଠିକ୍ କହି ପାରି ନଥିବ । ଦେଖୁନାହାନ୍ତି ଏ ଇସ୍କୁଲମାନଙ୍କର କଥା ? କେତେବେଳେ ମାଷ୍ଟ୍ରେ Exercise Book ଚାହାନ୍ତି । କେତେବେଳେ Practical Book ତ କେତେବେଳେ Copy Book । ପୁଣି କେତେବେଳେ Hand writing ଖାତା—ହୁଏତ ମଧୁ ଜାଣି ନଥିବ ଠିକ୍ କରି କେଉଁ ଖାତା ଆଣିବାକୁ ହେବ ।

( ପ୍ରବେଶ କରିଚନ୍ତି ରେଖାଦେବୀ )

ରଙ୍ଗଲାଲ୍—ଆସ୍ ଆସ୍ ବହେନ୍ ଜୀ ।

ରେଖା—ନା ନା ରଙ୍ଗଲାଲ୍ ବାବୁ, ମୋ ପୁଅ Exercise Book—ନମ୍ବର ୮ ମାଗିଲା, ଆଉ ଆପଣ ଶୋଧ୍ ଫେରେଇ ଦେଲେ—

ରଙ୍ଗଲାଲ୍ ( ଈଷତ୍ ହସି )—ଠିକ୍ ସେଇ କଥା କହୁନ ଥିଲି, ହୁଁ Exercise Book, ନମ୍ବର—୮ଟା ଆମ ଦୋକାନରୁ ସରିଯାଇଚି । ତା ହେଲେ ସେ ସେଇଥିପାଇଁ ଫେରିଯାଇଥିବ । ଛମନ୍ତୁ । ଛମନ୍ତୁ । ଆପଣ ଆଜ ପଠେଇ ଦିଅନ୍ତୁ । ମୁଁ କୋଉଠୁ ହେଲେ ମଗେଇ ଆଣି ଦଉଚି । ନୋହେଲେ ମୁଁ ମଗେଇ କରି ତାହା ହାତରେ ପଠେଇ ଦଉଚି ।

ରମେଶ—ଧନ୍ୟବାଦ । ସେ କାମ ଚଳିଗଲଣି । ଅନ୍ୟ ଅନ୍ୟ କାମ କହନ୍ତୁ ।

ରଙ୍ଗଲାଲ୍—ନା ଖାଲି ସେମିତି ଦେଖା କରିବାକୁ ଆସିଥିଲି ।

ରମେଶ—କଣ ଲଟେରୀରେ ମୁଁ ୨୫ ହଜାର ପାଇଚି ବୋଲି ଶୁଣି ?

ରଙ୍ଗଲାଲ୍—ଛମା କରନ୍ତୁ, ଛମା କରନ୍ତୁ ରମେଶ ବାବୁ ! ଆପଣ ଅଯଥା, ଏପରି ସନ୍ଦେହ କରିବେ ? ଆପଣ ମୋର ନାମୀ ଗ୍ରାହକ । କହି ଅଛି ତାଙ୍କର

ନୁହଁ ? ଗଲ ବର୍ଷ ବର୍ଷରେ । ଆପଣଙ୍କ ଭଲ ମନ୍ଦରେ କ'ଣ ମୋର କିଛି କହିବାର ନାହିଁ?

ରମେଶ—ଭଲରେ ଅଛି । ମନ୍ଦରେ ନାହିଁ । ଆସନ୍ତୁ । ଆପଣଙ୍କର ଟଙ୍କା ଆପଣଙ୍କ ପାଖେ ଠିକ୍ ପହଞ୍ଚିଯିବ ।

ରଙ୍ଗଲାଲ୍—ଅଚ୍ଛା ଯାଉଛି ରମେଶ ବାବୁ । କିନ୍ତୁ ମୋର କିଛି ଭୁଲ୍ ନାହିଁ । ମୁଁ ତମର ନଜର ଭେଟ ହିସାବରେ ତମକୁ ଦେଖା କରିବାକୁ ଆସିଥିଲି—

ରମେଶ ବାବୁ—ସେଥିପାଇଁ ସମସ୍ତ ଭେଟ ଅଛି—ଆସନ୍ତୁ ।

( ରଙ୍ଗଲାଲ୍ ପ୍ରସ୍ଥାନ )

ରମେଶ—ସେମାନେ ତ ଏତେ ଭେଟ କରିବାର କଥା ନୁହେଁ ? କାହିଁକି ଏ ବଳାସ୍ତ୍ର ବୁଝି ପାରୁନ ।

ରେଖା—ମୁଁ ବି କିଛି ବୁଝି ପାରୁନ । କ'ଣ ତାଙ୍କ ମନରେ ଅଛି କେଜାଣି ?

ରମେଶ—ମନରେ ତ କିଛି ନାହିଁ ମୁଁ ଜାଣେ । ଆଉ ଯଦି ବା କିଛି ଥିବ, ତେବେ ଏଇନାଗେ ତ ଆଉ କିଛି ନ ରହିବାର କଥା । କିନ୍ତୁ କାହା ମନର ଭିତର କଥା ଜାଣି ହଉଚି କପରି ? ବିନା ଦେଖା ନ ହେଲେ—

( ପୁଣି ଘଣ୍ଟିର ଶବ୍ଦ )

ରମେଶ—ଏଇଥର ଆସିଗଲେ ବୋଧହୁଏ—

( ପ୍ରବେଶ କରିଛନ୍ତି ଧ୍ରୁବ ବାବୁ—ଧ୍ରୁବ ବାବୁ ଜଣେ ଦେଶକର୍ମୀ—ତାଙ୍କ ହାତରେ ମ୍ୟୁନିସିପାଲିଟି ଇଲେକ୍‌ସନ୍ ପାଇଁ ପ୍ରାର୍ଥୀ ବାଛିବାର ଦାୟିତ୍ୱ ଦିଆଯାଇଛି )

ରମେଶ—କି ? ଧ୍ରୁବ ବାବୁ ଯେ ? ଅନେକ ଦିନ ପରେ—

ଧ୍ରୁବ—ନା ଅନେକ ଦିନ କୁଆଡେ ? ସେଦିନ ତ ମାର୍କେଟରେ ଦେଖା ହୋଇଥିଲା !

ରମେଶ—ହଁ । ଆଉ ସବୁ ଭଲ ?

ଧ୍ରୁବ—ଭଲ କଣ ଖରାପ । ଏ ଦେଶ କାର୍ଯ୍ୟରେ ଲାଗି ରହିଲେ ଯାହା ହବାର କଥା ?

ରମେଶ—କାହିଁକି ? ପୁଣି କଣ ହେଲା ?

ଧ୍ରୁବ—କେବେ କଣ କାମ ଛାଡୁଚି ନା ଅଛି ଛାଡ଼ିବ ? ଆସେମ୍ବ୍ଲି ଇଲେକ୍‌ସନ୍ କାମ ସରିଗଲା ବୋଲି ମଣିଷ ଭାବିଲା ବେଳକୁ ପୁଣି ଆଖି ଆଗରେ ଦେଖା ଦେଲାଣି ମ୍ୟୁନିସିପାଲିଟି ଇଲେକ୍‌ସନ୍ ।

ରମେଶ—ସେଦିନ ତ ଆପଣ ମତେ ସେଇଆ କହୁଥିଲେ । ଆପଣ ତ କାଳେ କହୁଥିଲେ ପ୍ରାର୍ଥୀ ବାଛିବା ଚୂଡ଼ାନ୍ତ ହୋଇଗଲା ।

ଧ୍ରୁବ—ଅରେ ପାଗଳା କଥା ? ତାଙ୍କର କଣ ଏମିତ ତ୍ରୋଷ୍ଟ ହୁଏ ନା ହେଲଣି ? ମୋଠରୁ ତ ସେମିଫାଇନାଲ ହୋଇନାହିଁ । ଅଉ ଫାଇନାଲ କଥା ପଚାରୁଛ କଏ ?

ରମେଶ—କାହିଁକି ? ମୋର ଯେତେଦୂର ମନେ ହେଉଛ ମୋ ନା propose କରିଥିଲେ ଗୋବନ୍ଦ ବାବୁ—ମଙ୍ଗେ କ ସେ ·ଦର୍କାର ପଡ଼ିଲେ ଗୃହସ୍ଥ ଛାଡ଼ିବାକୁ କହୁଥିଲେ—ମୁଁ କ.ଗ୍ରଲ ହୋଇଥିଲି । ମାତ୍ର ଅପଣ ବୁଅତେ ମନାକଲେ ଶୁଣିଲି ।

ଧ୍ରୁବ—ଅରେ ଛାଡ଼ ଗୋବନ୍ଦବାବୁଙ୍କ କଥା—ସେ ପୁଣି ଗୋଟାଏ ମଣିଷ । ତାଙ୍କ କଥାରେ କ'ଣ ଟିକେ ଅଛ ? ମୋ କଥା ଅଣି ତମ ପାଖରେ କହବ, ତମ କଥା ନେଇ ମୋ ପାଖରେ କହବ—ଏଇଅ ହେଲ ତାଙ୍କର କାମ । ତାଙ୍କ କଥାରେ ପୁଣି ତମେ ଭରସା କରୁଛ ?

ରମେଶ—କନ୍ତୁ ତା ପରେ ତଂ ଅପଣଙ୍କ ସାଙ୍ଗେ ମାର୍କେଟରେ ଦେଖା ହେଇଥିଲା । ଅପଣ ବ ସେଦନ କହଲେ ତାଲକା Final ହେଇଗଲା ।

ଧ୍ରୁବ—ପୁଣି ସେଇ Final ଶବ୍ଦ ଅପଣ ଅଉ ମୁହଁରେ ଧରବେ ନାହିଁ । କହଲ ପର Final ଶବ୍ଦ ହୋଇ ସ୍ୱଜଗତର କୌଣସି ଅଭଧାନରେ ନାହିଁ । ସବୁବେଳେ Semi Final । ଛାଡ଼ନ୍ତୁ । ମୁଁ ପଚାରୁଥିଲି ଏବେ ବ ସମୟ ଅଛ । କଣ ସ୍ୱରୁଚନ୍ତି ।

( ରେଖାଦେବୀ ପଶି ଅସିଛନ୍ତି )

ରେଖା—ନମସ୍କାର ଧ୍ରୁବବାବୁ । ସେ ମ୍ୟୁନସିପାଲିଟି ଇଲେକ୍ସନରେ ଅପଣ ସ୍ଥାଙ୍କୁ ପୁଅରୁ ନାହିଁ । ଏମିତ ଏ ଭଲ ଅଛନ୍ତି ।

ଧ୍ରୁବ—କାହିଁକି ? ଅସୁବଧା କଣ ?

ରେଖା—ଦେଖନ୍ତୁ ଅସୁବଧା, ସୁବଧାର ବର୍ତ୍ତିମାନ କାଠ୍‌ଇଟ୍ ଉଥର କରହେବ ନାହିଁ । କନ୍ତୁ ମୋର ଇଚ୍ଛା କୁହଁ ସେଥିରେ ସେ ମୁଣ୍ଡ ବର୍ତ୍ତି କରନ୍ତୁ ।

ଧ୍ରୁବ—ଅପଣ ବୁଝୁନାହାନ୍ତି ରେଖା ଦେବୀ—ଅତୀତ ବାଦ୍‌ର ଯୁଗ ଗଲା—ନବୀନ ବାଦ୍‌ର ଯୁଗ ଅସିଲା—ରମେଶବାବୁ ଜଣେ ପ୍ରଗତବାଦୀ ମନୁଷ୍ୟ—ସେ ଭୋଟ ପାଇଗଲେ ଅପଣମାନଙ୍କର ଭଲ ହେବ—ଦେଶର ବ ଭଲ ହେବ ।

ରେଖା—ବୁଝୁଛ ଧ୍ରୁବବାବୁ । ମାତ୍ର ବଡ଼ ଡେ଼ରି ହୋଇଗଲା । ସେ ବଷୟରେ ନିଷ୍ପତ୍ତି ଅଗରୁ ନେଇଥିଲେ ହୋଇଥାନ୍ତା ।

ଧ୍ରୁବ—ନାଁ କଛ ଡେର ହୋଇନାହିଁ । କେବଳ ରମେଶବାବୁ ହଁ କଲେ ହିଁ ହେଲା । ତାଙ୍କ ଭଳି ଯୋଗ୍ୟ ଲୋକ—ଜଣେ ଭଲ ବକ୍ତା, କର୍ମୀ—ଏଭଳି ଲୋକକୁ ନ ବାଛଲେ—

ରମେଶ—କିନ୍ତୁ ସେ କଥାର ଜବାବ ଦେଇ ପାରିବେ ଆପଣ ଧ୍ରୁବବାବୁ ? ସେଦିନ ଯେତେବେଳେ ଗୋବିନ୍ଦ ବାବୁ ଏ ପ୍ରସ୍ତାବ ନେଇ ଯାଇଥିଲେ, ସେତେବେଳେ କୋଉଠି ଥିଲା ଏ ସବୁ ବିଶେଷଣ ?

ଧ୍ରୁବ—ରମେଶବାବୁ !

ରମେଶ—ମୁଁ ସବୁ ଜାଣେ ଧ୍ରୁବବାବୁ ! ସେତେବେଳେ ମୋର ଇଚ୍ଛେସ୍ ଉଠାଣର ଖବର ନଥିଲା । ତେଣୁ ମୁଁ ଥିଲି ଅପଣଙ୍କ ଆଖିରେ ଫକିର୍ !

ଧ୍ରୁବ—ରମେଶବାବୁ—

ରମେଶ—ଅପଣଙ୍କ ଭଳି ମଧ୍ୟସ୍ଥର କୌଣସି ଆବଶ୍ୟକତା ନାହିଁ ଧ୍ରୁବବାବୁ ! ଆଜି ଦେଶର ଆଖି ଫିଟିଯାଇଛି । ଆଜି ଦେଶର ଜନତା ପ୍ରତିନିଧି ବାଛିବାକୁ ମଧ୍ୟସ୍ଥ ଆବଶ୍ୟକ କରନ୍ତି ନାହିଁ—ଯାହାକୁ ସେମାନେ ଉପଯୁକ୍ତ ବାଛିବେ, ତାକୁଇ ସେମାନେ ଠିକ୍ କରୁଛନ୍ତି ଅଜି କରିବେ । ଦେଖୁନାହାନ୍ତି, ସାରା ଦେଶର ଜନତାଙ୍କ ମତ । ଅପଣ ଆସନ୍ତୁ ।

ଧ୍ରୁବ—ଅସ୍ତୁତ ରମେଶବାବୁ । କିନ୍ତୁ ବିଦାୟ ନେବା ପୂର୍ବରୁ, ତଥାପି ମୁଁ ଅପଣଙ୍କୁ ଅନୁରୋଧ କରିଯାଉଛି, ଅପଣ ମତେ ଭୁଲ ବୁଝିବେ ନାହିଁ—

( ଧ୍ରୁବ ଗୁଲିଗଲେ )

ରମେଶ—ଅଜ କଣ ହେଲେ ଭୁଲ ବୁଝନ୍ତେ ରେଖା ଦେବୀ !

ରେଖା—କୌଣସି ମତେ ତାଙ୍କ କଥାରେ ଖସିଯାଇ କିଛି ପଇସା ଖର୍ଚ୍ଚ କରିଥିଲେ ହୁଏତ—

ରମେଶ—କିନ୍ତୁ ସତ କହ, ପଇସା କଣ ଅଛି ସେଥିପାଇଁ ?

ରେଖା—ଅଛିଛି । ଅଜ ସେଇଥିପାଇଁ ଏ ଲୋକମାନଙ୍କର ଏତେ ଧାଁ ଧଉଡ଼—

( ପୁଣି ବାହାରେ ଘଣ୍ଟିର ଶବ୍ଦ—ପଛିଆସିଚନ୍ତି ଗୋଲକବାବୁ ଓ ସାନ୍ଦ୍ରର ମା ସୀତାଦେବୀ, ସୀତା ଦେବୀ ଅତ୍ୟନ୍ତ ବେଶରେ ସୁସଜ୍ଜିତା—ସେ ରମେଶବାବୁଙ୍କ ଘର ଭିତରର ଗୃହପଟେ ଅଖି ବୁଲାଇ ଅଶ୍ଚର୍ଯ୍ୟ ହୋଇଗଲେ )

ଗୋଲକବାବୁ—ଏଇ ହେଲା ରମେଶ । ମୋର ଅତୀତର ବନ୍ଧୁଦିନର ସାଙ୍ଗ—

( ରେଖାଦେବୀ ଅସି ମହଞ୍ଚିଲେ )

ରମେଶ—ଅଜ ଏ ହେଲେ ରେଖା ଦେବୀ—

ସୀତା—ବେଶ୍ ଭଲ ହେଲା, ଅପଣମାନଙ୍କ ସାଙ୍ଗେ ଦେଖା ହୋଇଗଲା । ମୁଁ ବହୁତ ଥର ହେଲଣି ଅସିବି ଅସିବି ବୋଲି—

ଗୋଲକବାବୁ—ହେଲେ ମତେ ସମୟ ମିଳୁଛି ବୁଝୁଛ ଯେ ଅସି ହେଉଛି ? ଅଜ ସୀତା ବହୁତ ଜିଦ୍ ଧରିଲେ ଅସିବାକୁ—

ସୀତା—ନାଇଁ ମ ମୁଁ କାହିଁକି ଜିଦ୍ ଧର୍ ବସିବି ? ଏଇ ନିଜେ ଅପଣଙ୍କର ସାଙ୍ଗ ନାଁ ?

ରମେଶ—ହଁ, ପିଲାଦିନର ସାଙ୍ଗ ହୋଇଥିଲେ ମନଟା ସେମିତି ହୁଏ ।

ସୀତା—ସେଇଥି ପାଇଁ କହୁଚି, ମତେ ଟାଣି ଟାଣି ଅଣିଲେ । କଣ୍ଟ୍ରାକ୍ଟର ଲୋକ ନା ? ସବୁବେଳେ ତ କାମ ନହେଲେ ଦଲ୍—ଦଲ୍ ନହେଲେ କାମ । ଆଜି କଣ ଡ୍ରାମାସ୍ କଥା ଅଛି ?

ରମେଶ—ଅଛି ନିଶ୍ଚୟ । ଆଜି ତା ହଉଚନ୍ତି ସୀତାଦେବୀ ନିଜେ ।

ଗୋଲକ—Exactly ରମେଶ । I congratulate you । ଦିଲ୍ଖୁଲ୍ ମୋ ମନ ଭିତରର କଥାଟାକୁ ତୁ କହି ଦେଉଚୁ ।

ରମେଶ—ଏତାବେଳେବେ ପିଲା ଦିନର ସାଙ୍ଗ ନା ?

ଗୋଲକ—ହଁ କଣ ଦେଖୁଚ ? (ସୀତାଙ୍କୁ ପଚାରିଲେ)

ସୀତା—ମଲା ମୋ'ଠୁ କଣ ଶୁଣିବ ବୋଲି ପୁଚ୍ଛୁଁଚ ମ ? ମୋଠାରୁ କଣ ଶୁଣିବାର କିଛି ଅଛି !

ଗୋଲକ—ଓ ହୋ ? ଜାଣିଲି, ଜାଣିଲି । ଅରେ ଏ ପର୍ଯ୍ୟନ୍ତ ତୁ ମିନାକୁ ଅଣିନାହୁଁ ଯେ—

ସୀତା—(ହସି ହସି) ସବୁ ବୁଝନ୍ତି ନେଇ ଟିକିଏ ଡେରିରେ ବୁଝନ୍ତି ।

ଗୋଲକ—ଦେଖ ସୀତା । ମୋ ଚାକରଟା ଏମିତି ନକର—

ସୀତା—ଘରେ ଏକୁଟିଅ କରବ ?

ଗୋଲକ—(ହସି ହସି) ଜାଣିଲୁ ରମେଶ, ଏ ସବୁ ବୁଝନ୍ତି ଯେ, ଟିକିଏ ଡେରିରେ ବୁଝନ୍ତି ।

ରମେଶ—ହଁ ରେଖା, ମିନାକୁ ଡାକନା—

ରେଖା—( ଡାକିଲେ ) ମିନା ମିନା—ମୁଁ ଜଳଖିଆ ନେଇ ଅସେ । (ରେଖା ଭିତରକୁ ଯିବାକୁ ବାହାରୁଥିଲେ )

ସୀତା—ଅରେ ରହମ । ଜଳଖିଆ ଖାଇବାର ବେଳ କଣ ଚାଲିଯାଉଚି ?

ରେଖା—ପାନଖଣ୍ଡେ ତ ଅଣେ !

( ରେଖା ଚାଲିଗଲେ—ମିନା ଅସି ପ୍ରଣାମ କଲା ଦୁହିଙ୍କୁ )

ସୀତା—ନା କଣ ମା !

ମିନା—ମୀନାକ୍ଷି, ଡାକ ନା ମିନା ?

ସୀତା—ହଉ ଯା ଯା ମା । ଚିରାୟୁ ହୋଇ ଥା ।

( ମିନା ଚାଲିଗଲା )

ଗୋଲକ—ଏତେ ଚଞ୍ଚଳ ନାଁଟା ଭୁଲିଗଲ ତମେ ? ମୁଁ ପରା କହିଥିଲି ମିନା—ମୀନାକ୍ଷୀ—ସବୁକିଛି ।

ସୀତା—ଜାଣିଲେ ରମେଶ ବାବୁ !

ଗୋଲକ—ଓଃ, ବୁଝିଲି ବୁଝିଲି, ଝିଅର କଥା କହିବା ପରୀକ୍ଷା କରୁଥିଲି ।

ସୀତା—ଜାଣିଲେ ରମେଶ ବାବୁ ! ଇଏ ସବୁ ବୁଝନ୍ତି ଯେ, ହେଲେ ଟିକିଏ ଡେରିରେ ବୁଝନ୍ତି ।

ଗୋଲକ—ଛାଡ଼ ଛାଡ଼ । ମୁଁ ଡେରିରେ ବୁଝେ କି ସହଜ ବୁଝେ, ତମ ମତାମତ କଣ ଦେଇ ଶୁଣେ !

ସୀତା—କଣ ତେମେ ଜେଦ୍ କରିବ ନା କଣ ?

ଗୋଲକ—ଅହୋ ନାରିମ୍ ! କିଛି ତ ଗୋଟାଏ କହିଯିବା ରମେଶଙ୍କୁ ! ଆମର ଯେମିତି ପୁଅ—ତା'ର ସେମିତି ଝିଅ—ଆଉ ବିଶେଷତଃ ଝିଅ ବାପାଙ୍କର ଦାୟିତ୍ୱ ବେଶୀ—

ସୀତା—ହାଁ ତାଙ୍କର କ'ଣ ପୁଅ ନାହାନ୍ତି କି ?

ରମେଶ—ମୋର ଦୁଇ ପୁଅ ସମସ୍ତେ ଅଛନ୍ତି—ଆଉ ୯ ବେଶୀ ବେଶୀ ଅଛନ୍ତି ସୀତା ଦେବୀ—ଅନେକ ବେଶୀ ।

ସୀତା—ଭଗବାନ ଇସ୍ତାଙ୍କୁ ଦେଇଚନ୍ତି, ସିଅଙ୍କୁ କି ଦେଇଚନ୍ତି ।

ରମେଶ—ସିଅଙ୍କୁ ଦେଇନାହାନ୍ତି, ଦେବେ ବୋଲି ଶୁଣାଯାଉଚି ।

( ରେଖା ପାନ ଆଣିଲେ—ସୀତା ପାନ ଖାଇଲେ)

ଗୋଲକ—କିଛି ତ ଗୋଟାଏ କହ ?

ସୀତା—ମୁଁ କିଛି କହିବାକୁ ଚାହେଁନା । ବାହାଘର ତ କରିବେ ରମେଶ ବାବୁ । ସେ କଣ ତାଙ୍କ ଝିଅକୁ ଭଲ ମନ୍ଦ ଦେଖି ଦେବେନି ? ଘର ତ ଏବେ ଚମତ୍କାର ସଜେଇଛନ୍ତି ।

ଗୋଲକ—ଅରେ ତମକୁ ସେ କଥା କହିବାକୁ ପଡ଼ୁଚି କାହିଁକି ?

ସୀତା—ହଇଓ ତେମେ ପୁଣି କହୁଚ କାହିଁକି ? ମନ ନାହିଁ ? ମତେ ଯେତେବେଳେ ତମେ ବାହାହେଲ ତମର ଲମ୍ବା ଚଉଡ଼ା demand list ଆସି ନଥିଲା ?

ଗୋଲକ—ଓହୋ ! ଆମ ବେଳେ କଣ ଥିଲା କଣ ନଥିଲା ? ଏବେକୁ ଅନେକ ଅନେକ କଥା ବାହାରିଲାଣି ! ସେଇକଥାରେ କାହିଁକି ପଶୁ ପଡ଼ୁଚ ?

ସୀତା—ବୁଝିଲେ ରମେଶ ବାବୁ, ଇଏ ସବୁ ବୁଝନ୍ତି ଯେ, ହେଲେ ଟିକିଏ ଡେରିରେ ବୁଝନ୍ତି ! ହଉ, ଘରଦ୍ୱାର, କନ୍ୟାପାତ୍ର ସବୁତ ଦେଖାହେଲା ଏଥର ଉଠ—

ଗୋଲକ—ନା-ନା ଦେଖ ସୀତା, ମୁଁ କାଳେ ମୋର ବନ୍ଧୁ ବୋଲି କହୁନି—ତମେ ତମ ମନକୁ ପସନ୍ଦ କଲ—କଣ ଆମ ପାତ୍ର ପାଇଁ ଠିକ୍ ହବ ନାହିଁ ?

ସୀତା ଭଗବାନ ଇଚ୍ଛା କରିଥିଲେ, ଯୋଡ଼ସମକ ଭଲ ଦିଶିବେ ମିଳ ଆଉ ପାତ୍ର—

( ବାହାରୁ ଘଣ୍ଟି ଶୁଣାଗଲା—ପ୍ରବେଶ କରନ୍ତି ସାଧୁ—
ସାଧୁଙ୍କ ମନ ବଦଳିଛି । )

ଗୋଲକ—ଦେଖନ୍ତୁ ସାଧୁବାବୁ, ଆପଣଙ୍କର ପ୍ରସ୍ତାବ ମୁଁ ବେଶ୍‌ ଭଲ ଭାବରେ ଚିନ୍ତା କରିଛି ।

ସାଧୁ—ମୋ ପ୍ରସ୍ତାବ ?

ଗୋଲକ—ହଁ । ଆପଣ କହୁ ନଥିଲେ ଯିବ ସହିତ ମୋ ଝିଅର ବାହାଘର କରିବାକୁ ?

ସାଧୁ—ଓଃ ? ସେ ଦିନ ଯେ କହିଥିଲି ?

ଗୋଲକ—ହଁ ଠିକ୍ ତ କଲ୍ପ ଆମେ ?

ସାଧୁ—ଝିଅକୁ ଦେଖିଲେ ତ ? ଆପଣଙ୍କର ସ୍ତ୍ରୀଙ୍କର ପସନ୍ଦ ତ ?

ସୀତା—ଦେଖନ୍ତୁ ଆପଣମାନେ ଯୋଉଠି ଏତେ ଲୋକ ଅଛନ୍ତି ? ସେଠି ମୁଁ ମାଇପି ଲୋକଟା—

ସାଧୁ—ଦେଖନ୍ତୁ, ଏ କଥା ଏ ଯୁଗରେ ଶୋଭା ପାଏ ନା— ଆଜି କାଲି ପୁରୁଷ ଆଉ ନାରୀ ଏ ଦୁହିଙ୍କ ମଧ୍ୟରେ ଅଧିକାର ନେଇ ପ୍ରଭେଦ କଣ କିଛି ଅଛି ?

ସୀତା—ତା ଠିକ୍ । ତେବେ—

ସାଧୁ—କନ୍ୟା ଯଦି ପସନ୍ଦ, ତେବେ ଆଜି ନିବନ୍ଧ କରିଦିଅନ୍ତୁ ସୀତା ଦେବୀ, କାରଣ ପରେ ହୁଏତ ଆପଣ ରାଜି ହେବେ ନାହିଁ ।

ସୀତା—ମାନେ ? ମାନେ କଣ କହିବାକୁ ଚାହାନ୍ତି ଆପଣ ?

ସାଧୁ—ମୋର ତ ଆପଣଙ୍କ ସାଙ୍ଗେ ଏଇ ପ୍ରଥମ କଥାବାର୍ତ୍ତା—ଶୁନ୍ତୁ ସେତିକେ ଆପଣଙ୍କ ବିଷୟରେ ଶୁଣିଛି—

ସୀତା—ମାନେ କଣ ଆପଣ କହିବାକୁ ଚାହାନ୍ତି ?

ସାଧୁ—ମୁଁ ଗୁଣ୍ଡ୍‌ବାଜ ।

ସୀତା—ହବା ଉଚିତ ।

ସାଧୁ—ହଁ ଶୁଣ୍ ରମେଶ । ଖବର କାଗଜରେ ଲଟେରୀର ଫଳ ଆଜି ବାହାରିଛି । ମାତ୍ର ତୋ ନମ୍ବରଟା ଦେଖୁନାହିଁ । ତୋ ନମ୍ବର ହେଲା 489662—ମାତ୍ର ଏଇ ଦେଖ କାଗଜରେ ସେକେଣ୍ଡ ପ୍ରାଇଜ ନମ୍ବର ବାହାରିଛି 849662 ।

ରମେଶ—ସାଧୁ ! ( ବିବ୍ରତ ହୋଇ ପଡ଼ିଲେ ରମେଶ )

ସାଧୁ—ଏଇ ଦେଖନା । ( କାଗଜଟା ବଢ଼ାଇ ଦେଲେ )

ରମେଶ—ତେବେ ?

ସାଧୁ—ମୁଁ ତ ଠିକ୍ ସେଇ କଥା ଆଗରୁ ଗୋଲକ ବାବୁଙ୍କୁ ଆଉ ସୀତା ଦେବୀଙ୍କୁ ଜଣାଇ ଦେଇଛି ।

ସୀତା—ସବୁ ଜାଲ୍, ସବୁ ମିଛ । ଆପଣ ଏଇ ଭଳି ଜାଲ୍ ଆଉ ମିଛର ଆଶ୍ରୟ ନେଇ କଣ ବୁଝାଇବାକୁ ଚାହାନ୍ତି ସାଧୁବାବୁ !

ସାଧୁ—ଦେଖନ୍ତୁ ସୀତା ଦେଖା ! ମୁଁ କହୁଥିଲି ନା, ଏଇ ମୋର ଅପଣଙ୍କ ସାଙ୍ଗେ ପ୍ରଥମ ଦେଖା । ପୁଣି ବି ଅପଣଙ୍କୁ ମୁଁ କହୁରଖିଛି, ମୁଁ ସ୍ପଷ୍ଟ-ବାଦୀ । ଅପଣ ଟେଲିଗ୍ରାମ୍ ଦେଖିନାହାନ୍ତି, ସେଥିରେ ଲେଖାଥିଲା ରମେଶ୍‌ର ଠିକ୍ ଠିକଣା ନମ୍ବର ।

ସୀତା— ଛାଡ଼ନ୍ତୁ । ଅଉ ବେଶୀ ଭୂମିକାର ପ୍ରୟୋଜନ ନାହିଁ । (ଗୋଲକବାବୁଙ୍କୁ) ଅଉ, ତେବେ ଏଇ ବଳ ଅବସ୍ଥାକୁ ମନେ ଠାଣି ଅଣି ଜଣ ଯେ ଅନନ୍ଦ ପାଇବାକୁ ଗୃହୁଁଛ ? ତମର ତୁ ଏବେ କଣ୍ଟ୍ରାକ୍ଟର ଜୀବନରେ ଯଥେଷ୍ଟ ସମୟ ଅଛି, ସୁଯୋଗ ଅଛି, ଫୁର୍ତ୍ତି କରିବାକୁ—କିନ୍ତୁ ମୋର ସେ ଅବୋ ସମୟ ନାହିଁ—ମୁଁ ଅସୁଚି—( ବାହାରିଗଲେ )

ଗୋଲକବାବୁ—( ଯାଉ ଯାଉ ) ପରେ ଦେଖାହେବ ରମେଶ । ( ଗୃଲିଗଲେ )

( ରମେଶ ବସିପଡ଼ିଲେ ଖଟ ଉପରେ )

ସାଧୁ—ଦେଖେ ରେଖାଦେବୀ, କଣ ହଉଛି ?

( ସାଧୁ ବାହାରି ଗଲେ )

( ପ୍ରବେଶ କରନ୍ତି ରମେଶଙ୍କର ପୁଅ ମଧୁ )

ମଧୁ—ବାପା, ବାପା । ସ୍କୁଲର କିରମା ନବାବୁ ମାଷ୍ଟ୍ରେ ଅସିଚନ୍ତି ।

ରମେଶ—ଏଁ ?

ମଧୁ—ମୁଁ ନେକେ ତାଙ୍କୁ ଡାକି ଅଣିଛି । ମୁ କହିଲି, ଅସ ଅମ ଘରଦ୍ୱାର ସଜା ହେଉଛି ଦେଖିବ । ବାପା କେତେ ଠଙ୍କା ପାଇଚନ୍ତି ।

ରମେଶ—କିଏ ଜୀବନ ବାବୁ ? ବାହାନ୍ତି ?

ମଧୁ—ବାହାରେ ଅପେକ୍ଷା କରିଛନ୍ତି ।

ରମେଶ—ଅରେ ଡାକ୍ ଡାକ୍ । ଭିତରକୁ ଡାକ୍ ।

( ଜୀବନ ବାବୁଙ୍କୁ ଡାକିଲା—ଜୀବନ ବାବୁ ଭିତରକୁ ଅସିଲେ । )

ଜୀବନ—ନମସ୍କାର ରମେଶ ବାବୁ ! ମୁଁ ଜମା ଅସୁ ନଥିଲି । ମତେ ଅପଣଙ୍କର ପୁଅ ମଧୁ ଡାକିକରି ଅଣିଲା । ଅଉ ଯାହା ମଧୁ କହୁଥିଲା, ସବୁ ଠିକ୍ ।

ରମେଶ—ଯାହା ମଧୁ କହୁଥିଲା ସବୁ ଠିକ୍ ? କଣ କହୁଥିଲା ସେ ?

ଜୀବନ—ନା ବେଶୀ କିଛି ନୁହେଁ । ଏଇ ଘର ଦ୍ୱାର ତମର ସବୁ ସଜାସଜି ହୋଉଛି ବୋଲି । ବାସ୍ତବିକ୍ ମୁଁ ତ ନେକେ ଦେଖୁଛି, ବହୁତ ସୁନ୍ଦର ହେଉଛି । ସାବାସ ଭଲ କଲ—God help those who help others—

( କ୍ରୁସ୍‌ର ସଙ୍କେତ ଦେଖାଇଲେ ଛାତି ଉପରେ )

ରମେଶ—କିନ୍ତୁ ଅପଣ କଷ୍ଟ କରି ଅସିଲେ କାହିଁକି ?

ଜୀବନ—ଏଥିରେ କଷ୍ଟ କଣ ରମେଶ ବାବୁ ? ପିଲା ଅମ ସ୍କୁଲର ଛାତ୍ର । ସେ ଘରକୁ ଡାକିଲା ! ମୁଁ ଅସିବି ନାହିଁ ? ନିଶ୍ଚୟ ଅସିବି ।

ରମେଶ—ନାଁ ଦରମା ଟଙ୍କା ଟା କଣ ମୁଁ ଦେଇ ଆସିବ ନାହିଁ ?
ଜୀବନ—ଓଃ । ତମକୁ ଦରମା କଥା କଏ କହୁଛି ? ମୁଁ ମୋ ଦରମା ନବାକୁ
ଆସିନାହିଁ । କି ଦରମା ମାଗୁ ନାହିଁ । ବଳେ ତମେ ଦେଇ ଆସିବ କି ?
ନହେଲେ ପଡ଼ିଆରି ଦବ କି ? ହଁ ଅଲ୍ଲ ବ ଗୋଟାଏ କଥା—
ରମେଶ—ଜୀବନ ବାବୁ ?
ଜୀବନ—ଆମକୁ ଗୋଟାଏ donation ବ ଦବାକୁ ହବ ।
ରମେଶ—Donation ? ମୁଁ ?
ଜୀବନ—ହଁ ରମେଶ ବାବୁ, ମୁଁ ସବୁ ଜାଣେ । ଅଚ୍ଛନ୍ତୁ, ସେ ବିଷୟରେ ଏବଠୁ
କହୁ କହୁ ଲଭ ନାହିଁ । ବେଳ ହେଲେ ମୁଁ ଜଣେଇବ—ଆସୁଛି—
ନମସ୍କାର । ( ଜୀବନ ବାବୁ ଗୃଲଗଲେ )
ରମେଶ—(ପୁଣି ଖଟ ଉପରେ ବସି ପଡ଼ିଲ । ବାହାରୁ ଆସିଛନ୍ତି ମହେନ୍ଦ୍ର ବାବୁ,
ଯେଉଁ ଦୋକାନରୁ ଘର ସଜାଇବାର ସମସ୍ତ ଜିନିଷପତ୍ର ଆସିଛି,
ତାର ମ୍ୟାନେଜର )
( ବାହାରୁ ଘଣ୍ଟି ବାଜିଲ )
ରମେଶ—ଆସନ୍ତୁ । ଭିତରକୁ ଆସନ୍ତୁ ।
( ମହେନ୍ଦ୍ର ଆସିଲେ )
ଆପଣ ?
ମହେନ୍ଦ୍ର—ଚିହ୍ନି ପାରିବେ ନାହିଁ । ମା ଜାଣନ୍ତି । ଆମ ଦୋକାନକୁ ଯାଇଥିଲେ ।
ଏ ସବୁ ଜିନିଷ approvalରେ ନେଇ ଆସିଥିଲେ । ମତେ ଏଇ
ସମୟ ଦେଇଥିଲେ, ଆସିବାକୁ ।
ରେଖା—ଅରେ ହଁ । ମହେନ୍ଦ୍ର ବାବୁ ଯେ ! ଆପଣ ସିଧା ଚଳିଆ ଆସିଗଲେ
ଭଲ ହେଲ । ତା ନ ହେଲେ ଏତେ ଗୁଡ଼ାଏ ଜିନିଷପତ୍ର—
ମହେନ୍ଦ୍ର—ଦେଖନ୍ତୁ ଆମର ବ୍ୟବସାୟ ହେଲ ସେଇଆ—ତା ନହେଲେ business
ଚଳିବ କିଅଛୁ ? ତାଛଡ଼ା ଗ୍ରାହକ ଖୁସି ନହେଲେ, ଆମ
ବ୍ୟବସାୟର ଅର୍ଥ ରହିଲ କୋଉଟି କହନ୍ତୁ ? ହଁ ଆପଣ କହୁ-
ଥିଲେ ନା, ଆପଣଙ୍କର କେହି ବିଶିଷ୍ଟ ଅତିଥି ଆସିବାର ଥିଲ ? ସେ
ଆସିଗଲେ ? ତାଙ୍କର ସବୁ ପସନ୍ଦ ହେଲ ନା ?
ରେଖା—ଦେଖନ୍ତୁ, ଠିକ୍ ସେଇକଥା କହିବ କହିବ ବୋଲି, ମୁଁ କୋଉଠି
ଆସି ପହଞ୍ଚିଲଣି । ହଁ ମୁଁ କହୁ ନଥିଲି ବିଶିଷ୍ଟ ଅତିଥି ଆମ ଘରକୁ
ଆସିବେ ବୋଲି ?
ମହେନ୍ଦ୍ର—ସେଇ କଥା ତ ମୁଁ ପଗ୍ଭରୁଛି ? ସେ ଆସିଲେ କି ନାହିଁ ?
ରେଖା—ଶୁଣନ୍ତୁ ସବୁ କହୁଛି । ବସନ୍ତୁ ନା । ମୁଁ ଗୃହା କରିଆଣେ—

ମହେନ୍ଦ୍ର—ନା ଧିକ୍ବା ଏଇନାଗେ ତ ଖାଇଛି—
ରେଖା—ତେବେ ପାନଖଣ୍ଡେ ନିଅନ୍ତୁ ।

( ମହେନ୍ଦ୍ର ପାନ ନେଲେ )

ରେଖା—ହଁ କହୁଥିଲି ପରା ଆମ ବନ୍ଧୁଙ୍କ କଥା ? କଣ କହୁବ ଆଉ ! ହଁ ଏଇ ବନ୍ଧୁଣୀ ଗ୍ଲୁବରକୁ ସେ ଦେଖିଲେ—ପଚାରିଲେ ଦାମ୍ କେତେ ? ମୁଁ ତ ଆପଣଙ୍କଠାରୁ ଦାମ ଜାଣିଥିଲି । କହିଦେଲି । ଏ ଦାମ ଶୁଣି ସେ କହିଲେ ନା ନା ଏ ବନ୍ଧୁଣୀ ଗ୍ଲୁବର ଭଲ ନୁହେଁ । ଆପଣ ଅଧିକ ଦାମର ଆଣିଲେନି ?

ମହେନ୍ଦ୍ର—ଏଇ କଥା ତ ? ଏଇ ସାଙ୍ଗେ ସାଙ୍ଗେ ଅଧିକ ଦାମର ପଠାଇ ଦଉଛି । ବନ୍ଧୁଣୀ ଗ୍ଲୁବର କଣ ଗୋଟାଏ ପ୍ରକାରର ? ଅନେକ ପ୍ରକାରର ଅଛି । କେତେ ଦାମ୍‌ର ସେ ଚାହାନ୍ତି ?

ରେଖା—ଶୁଣନ୍ତୁ ନା !

ମହେନ୍ଦ୍ର—ତେବେ ବନ୍ଧୁଣୀ ଗ୍ଲୁବର ମୁଁ ଫେରାଇ ନେଉଛି—

( ବନ୍ଧୁଣୀ ଗ୍ଲୁବର ଉଠାଇ ସଜାଡ଼ିଲେ )

ରେଖା—ହଁ ଏଇ ହାରମୋନିଅମ୍‌ଟି ଦେଖ—ସେ ଭଦ୍ରଲୋକଙ୍କର ତ ପସନ୍ଦ ହୋଇଥିଲା—

ମହେନ୍ଦ୍ର—ପସନ୍ଦ ହୋଇଥିଲା ନାଁ ? ଏ ସହରରେ ଯେତେ ରକମର ମହଜୁଦ, ସବୁ ଭିତରେ ଏଇଟା ହେଲା best । ମୁଁ ଜାଣେ ପରା ପସନ୍ଦ ନିଶ୍ଚୟ ହୋଇଥିବ । ବନ୍ଧୁଣୀ ଗ୍ଲୁବର ପସନ୍ଦ ନ ହେଲେ ନାହିଁ ।

ରେଖା—ନାଁଇ ମ ? କଥାଟା ପରା ମୁଁ ପୁରା କରି ନାହିଁ ? ତାଙ୍କର ମେମ୍ ସାହେବ କହିଲେ ଏଇଟା ବୁଅଡ଼େ ଭଲ ନୁହେଁ । ଗୋଟାଏ ବିଲାତି ଜିନିଷ ତାଙ୍କର ଦରକାର ।

ମହେନ୍ଦ୍ର—ତାଙ୍କୁ କହିଦେଲେ ନାହିଁ, ବିଦେଶୀ ଜିନିଷ ଅଣଚାଇ ଆଣି ହେବ ନାହିଁ ? ବିଶେଷ କରି ଦେଶି ଛଅରି ଜିନିଷ ଦେଶରେ ରହୁବାର ତ ଆଉ କୋଉଠିକି ଯିବ ?

ରେଖା—ସେ କଥା କଣ ଆମେ ଜାଣିଚୁ ? ମୁଁ ବା ଭୁଲି ଯାଇଥିଲି । ବାବୁ ପରା ସାଙ୍ଗେ ସାଙ୍ଗେ କହିଲେ ।

ମହେନ୍ଦ୍ର—ତାହେଲେ ଅଉ କଣ ?

ରେଖା—ନାଁ ମାଇପି କଥା ତ ? ଏକା ଜିଦ୍ ।

ମହେନ୍ଦ୍ର—ଯେତେନ୍ତୁ ତାଙ୍କର ପସନ୍ଦ ନହେଲା ନାହିଁ—ଆମ ଦୋକାନରେ ବହୁ ପଡ଼ି ରହିବ ପିବ ନାହିଁ—

ରେଖା—ମଜ ସେ କଥା ଭାବିବ କହୁଚନ୍ତ ମ ? ମହେନ୍ଦ୍ର ବାବୁ ଅତ ନ ହେଲେ ବ ତୁମ ପିଲ ଘରେ କ'ଣ ମିଳି ଆମର ଦର୍ଜାର ହେବ ନାହିଁ ?

ମହେନ୍ଦ୍ର—ହଁ ଛଡ଼ନ୍ତୁ, ମୁଁ ନେଇ ଯାଉଛ ।

ରେଖା—ହଁ ଅଜ ଏଇ କାଠ ଜିନିଷପତ୍ର—ଭଲରେ ଭଲ । ଆପଣଙ୍କ ପାଖରୁ ସବୁଠୁ ଭଲ କାଠ ଜିନିଷପତ୍ର ମାନେ furniture ତ ମୁଁ ଆଣିଲ । ଶେଷକୁ ସେ ବୁହେଁ କହୁଲେ, ପୁଣି ତାଙ୍କର ନୂଆ ହେ ନଡେ କାଠ ଜିନିଷର ଅର୍ଡ଼ର ଦେବେ । ଆପଣଙ୍କର address। ଅବଶ୍ୟ ମୁଁ ତାଙ୍କୁ ଦେଇଛ ।

ମହେନ୍ଦ୍ର—ତାଙ୍କୁ ଧନ୍ୟବାଦ । ଆପଣଙ୍କୁ ବି ଶତ ସହସ୍ର ଧନ୍ୟବାଦ । ହଁ ମୋ ଦୋକାନର ଲୋକ ବାହାରେ ଅଛନ୍ତି । ସବୁ ଜିନିଷ ଫେରାଇ ନେଇଯିବେ—ଆଚ୍ଛା—ନମସ୍କାର ।

( ମହେନ୍ଦ୍ର ଚାଲିଗଲେ—ତାଙ୍କର ଲୋକମାନେ ଭିତରରୁ ଆସି ଦୋକାନରୁ ଅଣାଯାଇଥିବା ଜିନିଷ ସଙ୍ଗେ ସଙ୍ଗେ ନେଇଗଲେ )

ରମେଶ—ଅଲ୍ପକେ ଆମେ ରକ୍ଷା ପାଇଗଲେ ରେଖା ଦେବୀ !

ରେଖା—ମାନେ ?

ରମେଶ—ଠକାମୀ—ଭାରତୀୟ ପିଙ୍ଗଳ କୋର୍ଡ଼ର ଧାରା ୪୨୦—ଦନ ଦପହରେ—

ରେଖା—କାହିଁକ ଯେ ତମେ ସବୁବେଳେ ଏମିତ ହୁଅ ?

ରମେଶ—ସବୁବେଳେ ନାହିଁ ରେଖା ଦେବୀ—ଏମିତ ବେଳେ ବେଳେ—

ରେଖା—ମାନେ ସେଥିପାଇଁ କଣ ମୁଁ ଦୋଷୀ ?

ରମେଶ—ମୁଁ ତମକୁ କେବେ ଦୋଷ ଦେଇଛ ?

ରେଖା—ଦେଖ କଣ ଅଛ ଯେ ତମେ ମୋ'ଠାରୁ ଆଶା କର ?

ରମେଶ—ଓହୋ ଅଠୋଟି ହେଲେ ବୋଇ ।

ରେଖା—ପୁଣି ଚାଲିଲ ସେଇ ଥଟ୍ଟା ? ସେଇ ପରିହାସ—ଉପହାସ; ଥଟ୍ଟା—ତାମସା—

ରମେଶ—ଦେଖ, ମୁଁ ଭାବୁଛ ଏକମାତ୍ର ଉପାୟ । ସେଇଥିରେ ହିଁ ମଣିଷ ନିଜକୁ ଭୁଲିଯିବ— ନ ହେଲେ ଜୀବନର ଜଟିଳତା ଏତେ ବଢ଼ିଯିବ ଯେ—

ରେଖା—ଆଗରୁ ଜାଣି ନ ଥିଲ ?

ରମେଶ—ଦେଖ ରେଖା ! ସତ ସତ କହିବାକୁ ଗଲେ, "ଦିଲ୍ଲୀକା ଲଡ୍ଡୁ ଯୋ ଖାୟା ଓ ପସ୍ତାୟା—ଯୋ ନହିଁ ଖାୟା ଓ ଭି ପସ୍ତାୟା ।" ଦେଖ ଆମର ଏତେ ପିଲା, ଆମର କଷ୍ଟ— ଯାହାର ପିଲ ନାହିଁ ?

ରେଖା—ଏଥି ଭିତରେ ତ ଅପୋଷ ସମାଧାନ କରିବାକୁ ସରକାର କହୁଲେ—

(ବାହାରୁ ପୁଣି ଘଣ୍ଟିର ଶବ୍ଦ)

ରମେଶ—ଆସନ୍ତୁ ।

(ପ୍ରବେଶ କଲେ ଘରର ମାଲିକ ଓଁକାର ବାବୁ)

ରମେଶ—ଆସନ୍ତୁ ଆସନ୍ତୁ ଓଁକାର ବାବୁ । କଣ କିଛି କାମ ଥିଲା ମୋ ପାଖରେ ?

ଓଁକାର—କାମ ତ ଆପଣ ଜାଣନ୍ତି ।

ରମେଶ—ଘରଭଡ଼ା କଥା ତ ଦୁଇ ତାରିଖରେ ହୋଇ ଯାଇଛି ।

ଓଁକାର—ମୋ ଚିଠି ପାଇ ନାହାନ୍ତି ?

ରମେଶ—ଚିଠି ?

ଓଁକାର—ହଁ ରେଜିଷ୍ଟ୍ରୀ ଚିଠି ।

ରମେଶ—କାହିଁକି ? କଣ ପୁଣି ହେଲା ।

ଓଁକାର—ହେବ ଅଉ କଣ ? ଗୋଟାଏ ତ କଥା ମୋର ଘରଭଡ଼ା ମୁଁ ଚାହେଁ—

ରମେଶ—କଣ ଅଉ ଥରେ ସେଇ ପୁରୁଣା ଚର୍ଚ୍ଚା କରିବାକୁ ଆପଣ ଚାହାନ୍ତି ?

ଓଁକାର—ଚର୍ଚ୍ଚା ଫର୍ଚ୍ଚା ମୋର ଦରକାର ନାହିଁ ରମେଶ ବାବୁ । ମୋର ଦରକାର ଟଙ୍କା । ମାସ ମାସ ଧରି ଘରଭଡ଼ା ବାକି ରହିଲେ କେମିତି ହବ ?

ରମେଶ—ଆପଣ କଣ ଚାହାନ୍ତି ?

ରେଖା—ସେ ଯାହା ଚାହାନ୍ତି, ମୁଁ କହି ଦେଉଛି ।

ଓଁକାର—ଆପଣ କଣ ଚାହାନ୍ତି, ଆପଣ ଟଙ୍କା ବାକିଅ ରଖିଥିବେ ଅଉ ମୁଁ କାନ୍ଥ repair କରି ଚାଲିଥିବି ।

ରେଖା—ତା ଜମା ନୁହେଁ । କାନ୍ଥ ନ ଭାଙ୍ଗିଥିଲେ repair ର ପ୍ରଶ୍ନ ଉଠନ୍ତା ନାହିଁ । ତା ଛଡ଼ା କାନ୍ଥ ଭାଙ୍ଗିଗଲେ ତ ଆପଣ ଭଡ଼ା କମ୍ ନେବେ ନାହିଁ ?

ଓଁକାର—ଭଡ଼ା ତ ଜମା ମିଳୁନାହିଁ ? ଅଉ କମ୍ ନେବାର ପ୍ରଶ୍ନ ଉଠୁଛି କୋଉଠି ?

ରମେଶ—ଛାଡ଼ିଲେ ଆପଣ କ'ଣ ଚାହାନ୍ତି ସିଧା ସିଧା କହୁନାହାନ୍ତି କାହିଁକି ?

ଓଁକାର—ଯଦି ସିଧା ଶୁଣିବାକୁ ଆପଣ ଚାହାନ୍ତି, ତେବେ ମୁଁ ଶୁଣାଇଦେବାକୁ ଚାହେଁ ଯେ, ଯଦି ଆପଣ ଘରଭଡ଼ା ନ ଦେଉଛନ୍ତି ତେବେ ମୁଁ ମକଦ୍ଦମା କରିବାକୁ ପ୍ରସ୍ତୁତ ଅଛି ।

ରମେଶ—ବୁଝିଲି, ସେଇ ଧମକଟା ଆପଣ ରେଜିଷ୍ଟ୍ରି ଚିଠିରେ ପଠାଇଛନ୍ତି । ଦୁଃଖର କଥା ମିଳନ ।

ଓଁକାର—ମିଳିଯିବ, ଡମ୍ବଳ—ଅଜି ବ କାଲି ।

ରମେଶ—ବୁଝିଲି । ଅଉ କଣ ଅଛି ?

ଓଁକାର—ତେବେ ଆପଣ ଏଥିରେ ରାଜି ତ ?

ରମେଶ—ଶୁଣନ୍ତୁ । କାହାକୁ ରାଜି କରାଇ ମକଦ୍ଦମା କରାଯାଏନା ।

ଓଁକାର—ମାନେ ।

ରମେଶ—ଆପଣ ଜଜଙ୍କୁ ପଚାରନ୍ତୁ । ସତ୍ୟ ହେଲେ, ମକଦ୍ଦମା ହୁଏନା ସତ୍ୟ ନ ହେଲେ ମକଦ୍ଦମା ହୁଏ । ତେବେ ମତେ ସତ୍ୟ ବୋଲି ଆପଣ ପଚାରୁଛନ୍ତି କାହିଁକି ?

ଓଁକାର—ତେବେ ଠିକ୍ ଅଛି ରମେଶ ବାବୁ । ମୁଁ ଭାବିଥିଲି ଆପଣ ମୋର ବନ୍ଧୁ ପୁଅର ବନ୍ଧୁ ଲୋକ—

ରମେଶ—ବନ୍ଧୁ ଲୋକ ବୋଲି ତ ଆପଣ ବଦ୍ଧୁତ କହୁଲେଣି ।

ରେଖା—ଆଉ କିଛି କାମ ଅଛି ?

ଓଁକାର—ନା ମୁଁ ଯାଉଛି । କିନ୍ତୁ ଭବିଷ୍ୟତର ଫଳାଫଳ ପାଇଁ ମୋତେ ଦୋଷ ଦେବେନି । —ନମସ୍କାର—

( ଓଁକାର ବାବୁ ଚାଲିଗଲେ—ରମେଶ ପୁଣି ଖଟ ଉପରେ ବସି ପଡ଼ିଲେ )

( ଅସି ପହଞ୍ଚିଲା ସମ୍ବଲ୍ ମୋଟ )

ରମେଶ—କିରେ ସମ୍ବଲ୍ ?

ସମ୍ବଲ୍—ଆଉ କାହିଁକି ସମ୍ବଲ୍ ମନେପଡ଼ିବ ବାବୁ ?

ରମେଶ—କାହିଁକି କ'ଣ ହେଲା କି ?

ସମ୍ବଲ୍—ମୁଁ ସବୁ ଜାଣେ ବାବୁ । ମିଳ ଦେଇର ବାହାଘର ହେଉଛି—ଏଣେ ମନ୍ତ୍ରିଙ୍କର ନୂଆ କୋଠା ଦରକାର—ଆଉ ସମ୍ବଲ୍ ମୋଟକୁ ପଚାରୁଛି କିଏ ?

ରମେଶ—ମିଳ ଦେଇର ବାହାଘର ? କିଏ କହିଲା ତତେ ?

ସମ୍ବଲ୍—କାହିଁକି ? ମତେ ସାଧୁବାବୁ କହିଲେ ।

ରମେଶ—ଓଃ ସାଧୁ କହୁଛି, ନାହିଁ ? ଯେତକ ଯାକ ସବୁ ନାଟର ଗୋବର୍ଦ୍ଧନ 'ସାଧୁ' । ନାହିଁରେ ସମ୍ବଲ୍ ଏଣେ ମିଳର ବାହାଘର କଥା ନାହିଁ ।

ସମ୍ବଲ୍—ଦେଖ ମୁଁ ସବୁ ଜାଣିଛି ବାବୁ । ମୁଁ ଲେମ୍ବୁ ଭାତ ଖାଇବାକୁ ଆସିନାହିଁ ।

ରମେଶ—ଲେମ୍ବୁ ଭାତ ବେଳକୁ ତତେ ଆଗେ ଡକାଯିବ ସମ୍ବଲ୍ ।

ସମ୍ବଲ୍—ଠିକ୍ ଅଛି ବାବୁ । ହେଲେ ତମେ ଏ ଗରିବ ଲୋକଟାକୁ ଭୁଲିଗଲ ।

ରମେଶ—ମୁଁ ଭୁଲିଗଲି ?

ସମ୍ବଲ୍—ଓଃ ତମେ ଭୁଲିନ । ମା ତ ଭୁଲି ଯାଇଥିବେ ।

ରେମେଶ—କ'ଣ ହେଲା ?

ସମ୍ବଲ୍—ନା ମ । ମୁଁ, ପିଲାମାନଙ୍କର କୋଠା, ଚଉ ମରାମତି କରିଥିଲି ସେ ପାଞ୍ଚଟଙ୍କା ଅଠଅଣା ବାକିଆ ରହି ଯାଇଥିଲା—

ରେଖା—ହଁ, ହଁ, ସମ୍ବଲର ବାକିଆ ଅଛି । ତୁ ଗୋଟାଏ କାମ କର ତ ସମ୍ବଲ୍ ?

ସମ୍ବଲ୍—କ'ଣ ମା ?

ରେଖା—ଦେଖ୍, ଏଇନେ ପିଲାମାନେ ନାହାନ୍ତି, ତୁ ଯୋଉ ଜୋତା ସିଲେଇ କରିଥିଲୁ, ତା ଫିଟି ଫାଟି ଗଲା ତ ଯେ—ଆଉ ମଧ୍ୟ ସେଥିକି ଜୋତାକୁ କଣ୍ଟା ବି ଉଠି ଯାଇଛି—ତୁ ଆସନ୍ତା ରବିବାରକୁ ଆସେ କି ମରାମତି କରିଦବୁ, ଆଉ ବାକିଆ ପଇସା ବି ନେଇଯିବୁ ।

ସମ୍ବଲ୍—ଆସିବି ମା—ରବିବାରକୁ ଆସିବି । ହେଲେ ବାକିଆ ପଇସାଟା—

ରେଖା—କହୁଛି ପରା, ତୁ ଯାହା ମରାମତି କରିଥିଲୁ, ସବୁ ଫିଟିଫାଟି ଯାଇଛି । ଆଉ ଥରେ କରିଦେଲେ ପଇସା ଦେବି ।

ସମ୍ବଲ୍—ଓଃ ? ବୁଝିଲି ବୁଝିଲି ମା । ଆସିବି, ଆସିବି ରବିବାରକୁ ନିଶ୍ଚେ ଆସିବି । ଯାଉଛି ।

( ସମ୍ବଲ୍ ଚାଲିଗଲା )

ରମେଶ—ଏଥର ଦେଖୁଛ ଦାୟିତ୍ୱଟା ମୋଠୁଁ ଯାଇ ରେଖାଦେବୀଙ୍କ ଉପରେ ପଡ଼ୁଛି ।

ରେଖା—ଦାୟିତ୍ୱ !

ରମେଶ—ହଁ ଅଠଟି ସନ୍ତାନ ହେବାର ପରିଣାମର ଦାୟିତ୍ୱ ।

ରେଖା—ମନ୍ଦ କଣ ? ସ୍ୱାମୀ ଯଦି ଅବୁଝା ହୁଏ, ତେବେ ପରିଣାମରେ ଦାୟିତ୍ୱ ଭୟଙ୍କର !

ରମେଶ—ବାସ୍ତବିକ୍ ରେଖା—ଅବୁଝ ମୁଁ ଆମର ବର୍ତ୍ତମାନ—ଆମର ଭବିଷ୍ୟତ—

ରେଖା—ବର୍ତ୍ତମାନ ବୋଲି ତ ଆମର କିଛି ନାହିଁ ? ଆଉ ଭବିଷ୍ୟତ ? ସେ'ତ କଳ୍ପନାର ବାହାରେ—

( ବାହାରେ ଘଣ୍ଟିର ଶବ୍ଦ )

ରମେଶ—ଆସନ୍ତୁ ।

( ବାହାରୁ ଗୋଲକବାବୁଙ୍କ ଚାକର ଚିଠି ଦେଇଗଲା )

ରେଖା—କାହାର ଚିଠି ?

ରମେଶ—ଓଃ ! ତେମେ ଗୋଲକର ଚାକରକୁ ଚିହ୍ନିନା ପରା ? ଗୋଲକର ଚିଠି—

ରେଖା—କ'ଣ ଲେଖିଚନ୍ତି ?

ରମେଶ—ଦେଖୁଛ ପରା—(ପଢ଼ିଲା )

ସ୍ନେହର ରମେଶ,

ତୋ ମୋ ଭିତରେ ଭୁଲ୍ ବୁଝାମଣାର ପ୍ରଶ୍ନ ଉଠୁନି । ମୋ ସ୍ତ୍ରୀଙ୍କର ଯାହା ଇଚ୍ଛା ହେଲେ ବି ଅନ୍ତତଃ ମୋ କଥା ମୁଁ ନିଶ୍ଚୟ ରଖିବି । କଥା ସ୍ଥିର କରିବାକୁ ଘଣ୍ଟାକ ପରେ ମୁଁ ଆସୁଛି । ଇତି ।

ତୋର

ଗୋଲକ ।

ଅସମ୍ଭବ । ଗୋଲକସ୍ୱାମୀଙ୍କର ଇଚ୍ଛା ନାହିଁ । ବାହାଘର ହେବ । ଏ ଭଳି ଅବସ୍ଥାରେ ମିନର ଉତ୍ପାତ ହେବ କଣ ? ମୁଁ ଯାଉଁ ଯାଉଁ ଜନାର୍ଦ୍ଦନ ବାବୁଙ୍କୁ ଡକାଇ ପଠାଉଛି । ତାଙ୍କ ଝିଅ ସାଙ୍ଗରେ ଏଇଠି ଅଛ ଗୋଲକ ପୁଅ ସାନୁର ବାହାଘର ମୁଁ କାଲେ ଠିକ୍ କରିବ । ଜନାର୍ଦ୍ଦନ ବାବୁ ବ ଭଲ ଦେବା ନେବା କରିବେ । ସବୁ ଠିକ୍ ହୋଇଯିବ ।

ଅସ 'ମଧୁ'—'ମଧୁ' ( ମଧୁକୁ ଡାକିଲେ– ମଧୁ ପ୍ରବେଶ । )

ଗଲୁ । ଜନାର୍ଦ୍ଦନ ମଉସାଙ୍କୁ ଡାକିଦବୁ, ସନ୍ଧ୍ୟା ଭିତରେ ଅସିବାକୁ କହିବୁ । ଜରୁରୀ କାମ ଅଛି । ( ମଧୁ ଗୃହଗମନ )

୨ରେଖା—ହଁଏ ଗୋଲକ ବାବୁ ଯେତେବେଳେ ସ୍ୱଇଚ୍ଛ ହୋଇ ସାଇଲେଣି, ସେଥିରେ ତମର ଏତେ ଅପତ୍ତି କାହିଁକି ?

ରମେଶ—ମୋର ଅପତ୍ତି କାହିଁକି, ତା ତେମେ ବେଶ୍ ଭଲରୂପେ ବୁଝି ପାରୁଚ ।

ରେଖା—ଶୁଣ । ଝିଅ ବାହାଘରରେ ଏମିତି ସ୍ୱାର୍ଥପ୍ରବଣ ହୋଇପଡ଼ିବା ଉଚିତ ନୁହେଁ ।

ରମେଶ—ସ୍ୱାର୍ଥପ୍ରବଣ ମୁଁ ହଉଛି, ତମେ ହଉଚ ।

( ପ୍ରବେଶ କରୁଛନ୍ତି ନାଚ ମାଷ୍ଟର ବସ୍ତୁ )

ବସ୍ତୁ—କଣ ମା, ମିନ ନାଚିବ ନାହିଁ ଶୁଣିଲି ?

ରେଖା—ହଁ ।

ବସ୍ତୁ—କାହିଁକି, କଣ ହେଲା ମା ?

ରେଖା—ଯେଉଁମାନେ ମିନକୁ ଦେଖିବାକୁ ଅସିଥିଲେ, ସେମାନେ ନାଚ ଶେଖି-ବାକୁ ଗୃହିଁଲେ ନାହିଁ ।

ବସ୍ତୁ—ନାଚ ଦେଖିବାକୁ ଗୃହିଁଲେ ନାହିଁ ? ମାନେ ? ମିନର ନାଚ କଥା ସେ କ'ଣ ଜାଣିଲେ ଯେ ?

ରେଖା—ସେ ପଚାରିଲେ ମିନକୁ ନାଚ ଶିଖଉଛି କିଏ ? ମୁଁ ଅପଣଙ୍କ ନାଁ କହିଲି ବସ୍ତୁ ବାବୁ—

ବସ୍ତୁ—ତା ପରେ ?

ରେଖା—ତାପରେ ସେ ନାଚ ଦେଖିବାକୁ ଗୃହିଁଲେ ନାହିଁ ।

ବସ୍ତୁ—ମୋ ନା ଶୁଣି ?

ରେଖା—ଅପଣଙ୍କ ନାଁଅ ଶୁଣି ନୁହେଁ । ଅପଣ ନାଚ ଶିଖାଉଛନ୍ତି ବୋଲି ଶୁଣି ।

ବସ୍ତୁ—ତେବେ ?

ରେଖା—ନା, ଅପଣଙ୍କ ପଇସାଠା ଅପଣ ପାଇବେ । ମାତ୍ର ବର୍ତ୍ତମାନ ପାଇଁ ନାଚ ବନ୍ଦ ହେଲା । ଅସନ୍ତା ପହିଲାକୁ ହୁଏତ ପୁଣି ଅରମ୍ଭ କରିପାରେ— ପହିଲାକୁ ଅସନ୍ତୁ—ଅପଣଙ୍କୁ ଯାହା ଦବାର କଥା, ମୁଁ ଦେବ ।

ବନ୍ଧୁ—ହଉ ମା—ଆସୁଛି ନମସ୍କାର ।

( ବାହାରୁ ପୁଣି ଘଣ୍ଟି )

ରମେଶ—ଜନାର୍ଦ୍ଦନ ବାବୁ ଆସିଗଲେ ବୋଧହୁଏ ।

( ପ୍ରବେଶ କରନ୍ତି ଜନାର୍ଦ୍ଦନବାବୁ )

ଜନାର୍ଦ୍ଦନ—ମତେ ଡକାଇ ପଠାଇଲେ ?

ରମେଶ—ଗୋଟାଏ ଭଲ ଖବର ଦବାକୁ । ମିଠେଇ ଦଅନ୍ତୁ ।

ଜନାର୍ଦ୍ଦନ—ଆରେ କଣ, ଖବରଟା ଆଗ କହ । ମିଠେଇ ଦେବା ବେଳ କ'ଣ ବୁଅଡେ ପଳେଇ ଯାଉଛି ? ବୁଝନା । କଣ ଖବରଟା ଆଗ ଶୁଣେ—

ରମେଶ—ଆପଣ କହୁଥିଲେ ନା, ଆପଣଙ୍କର ଝିଅ ଶୀଳା ମଢାଣେ ପାତ୍ରର ସନ୍ଧାନ ନେବା ପାଇଁ ?

ଜନାର୍ଦ୍ଦନ—କୋଉଠି ପାତ୍ରର ସନ୍ଧାନ ମିଳିଲା ?

ରମେଶ—ମିଳିଛି । ମୋର ଜଣେ ଅତି ପୁରୁଣା ସାଙ୍ଗ ଗୋଲକବାବୁ । ମସ୍ତବଡ଼ କଣ୍ଟ୍ରାକ୍ଟର—ତାଙ୍କର ପୁଅ ପାଇଁ—ଆପଣଙ୍କର ଝିଅଟି ତ ସୁନ୍ଦର—ତାଛଡ଼ା ଆପଣ ତ ଭଲ ଦେବା ନେବା କରିବେ ।

ଜନାର୍ଦ୍ଦନ—ଆରେ ଆଜି କାଲି କ'ଣ ସେତେଇ ଅଛି କଥା ଅଛି ? ତମେ ତ ଜାଣ, ମୋର ପିଲା ସଂଖ୍ୟା ସେତେ ବେଶୀ ନୁହେଁ କି ସେତେ କମ୍ ନୁହେଁ । ମୋ ବାପାଙ୍କର ପିଲା—ଅର୍ଥାତ୍ ଆମେ ଭାଇ ଭଉଣୀ ହୋଇ ମୋଟାଏ ଥିଲୁ । ଏବେ କଥା ଉଠିଲାଣି—ବାପଅଜା ନ ହେଲେ ମାଆ ଅଜା କେଉଁ ପଟରେ ପିଲାସଂଖ୍ୟା ହେବାର କମ୍ ଦେଖାଯାଏ—ହୁଏତ ପିଏ ବ ଗୋଟାଏ କାରଣ ହେଇପାରେ ଜନ୍ମ ନିୟନ୍ତ୍ରଣକୁ ଉତ୍ସାହିତ କରିବା ପାଇଁ—

ରମେଶ—ଓଃ, ବୁଝିଲି । ସେ ବିଷୟରେ ଗୋଲକ ବାବୁଙ୍କ ଅଜା ଧୁସାବ ଭଲ—ବ୍ୟସ୍ତ ହେବାର କିଛି ନାହିଁ ।

ଜନାର୍ଦ୍ଦନବାବୁ—ଦେଖନ୍ତୁ, କଥାବାର୍ତ୍ତା ଚୁଲୁ । ଯାହାଥିବ ।

ରମେଶ—କଥାବାର୍ତ୍ତା ଚୁଲିବ କଣ ? ବର୍ତ୍ତମାନ ଗୋଲକ ଆସୁଛି । ଅଚ୍ଛା, ଏଇଟି ତ ସବୁ କିଛି ନିଷ୍ପତ୍ତି ହୋଇଯିବ ।

( ପ୍ରବେଶ କରନ୍ତି ଗୋଲକ )

ଗୋଲକ—ନିଷ୍ପତ୍ତି ତ ମୁଁ ନିଜେ କରି ସାରିଛି—ଆଉ କଣ ବାକି ଅଛି ଯେ, ନିଷ୍ପତ୍ତି ହେବ ?

ରମେଶ—ନା ଗୋଲକ, । ଏ ହଉଚନ୍ତି ଜନାର୍ଦ୍ଦନବାବୁ । ଆମ ଅଫିସରେ କାମ କରନ୍ତି । ଯାଙ୍କର କଥା ମୁଁ ଆଗରୁ କହୁଥିଲି ।

ଗୋଲକ—ମାନେ ?

ରମେଶ—ଆମ ଦଳ୍ପ ପାଇଁ ।

ଗୋଲକ—ପାନ୍ତ ପାଇଁ ?

ରମେଶ—ହଁ, ସେଦିନ ତ ବାହାରିଥିଲେ ଜନାର୍ଦ୍ଦନ ବାବୁଙ୍କ ଘରକୁ—ଯାଇ ହେଲା ନାହିଁ । ତୁ ଅଳ୍ପ ଅସୁସ୍ଥ ବୋଲି ଖବର ପାଇ ଜନାର୍ଦ୍ଦନ ବାବୁଙ୍କୁ ଡକାଇ ଆଣିଥିଲି—

ଗୋଲକ—ମୁଁ ଯେ କହୁ ବୁଝି ପାରୁନାହିଁ ରମୁ ?

ରମେଶ—ଯଦି କଥାଟାକୁ ପ୍ରାଞ୍ଜଳ ଭାବରେ ବୁଝେଇ ଦବାକୁ ହୁଏ, ତେବେ ତୋ ପୁଅ ସାଙ୍ଗରେ ତାଙ୍କ ଝିଅ ଶାନ୍ତିର ବିବାହ କଲେ କିପରି ହୁଅନ୍ତା ?

ଗୋଲକ—ଏ ପ୍ରଶ୍ନ ଉଠୁଛି କାହିଁକି ?

ଜନାର୍ଦ୍ଦନ—ମାନେ, ଆପଣ କଣ କହୁଚନ୍ତି, ଏହା ଏକ ସ୍ୱାଭାବିକ ପ୍ରଶ୍ନ ନୁହେଁ ?

ଗୋଲକ—ନିଶ୍ଚୟ ସ୍ୱାଭାବିକ । କିନ୍ତୁ ।

ଜନାର୍ଦ୍ଦନ—ତେବେ କଥାଟାକୁ ଆପଣ ପ୍ରକାଶ କରୁନାହାନ୍ତି କାହିଁକି ? କଣ demand ମୁତାବକ ଅଛି ଖୋଲି କହନ୍ତୁନା—ମୁଁ କୌଣସିଥିରୁ ପଛେଇ ଯିବି ନାହିଁ ।

ରମେଶ—ମୁଁ ତ ଆଗରୁ ସେଇ କଥା କହି ରଖିଛି ଜନାର୍ଦ୍ଦନ ବାବୁ । ଆପଣଙ୍କର ସ୍ଥାବର, ଅସ୍ଥାବର ସମସ୍ତ ସମ୍ପତ୍ତିର ସୂଚନା ବି ମୁଁ ଦେଇଛି ।

ଗୋଲକ—କିନ୍ତୁ ମୁଁ ଯେ କାହାର ସୂଚନା ଗୃହି ନାହିଁ ।

ରମେଶ—ଓଃ । ତୁ ଗୃହି ନାହୁଁ । ମାତ୍ର ତୋ ସ୍ତ୍ରୀ ଗୃହିଥିଲେ—

ଗୋଲକ—କିନ୍ତୁ ମୁଁ ତ ଜନାର୍ଦ୍ଦନ ବାବୁଙ୍କ ଘର ବିଷୟରେ—

ଜନାର୍ଦ୍ଦନ—ମାନେ ଏକଥା ଥରେ ପଢ଼ି ଯଦି ଫଇସଲା ହୋଇ ସାରିଛି, ତେବେ ମତେ ଡକେଇ ଏ ତାମସା କରିବାର ଦରକାର କ'ଣ ଥିଲା ରମେଶ ବାବୁ ?

ରମେଶ—ଶୁଣନ୍ତୁ ଜନାର୍ଦ୍ଦନ ବାବୁ !

ଜନାର୍ଦ୍ଦନ—ନାଁ ମୁଁ ଆସୁଛି । ଏସବୁ ଆପଣଙ୍କର ଅପମାନ ଦେବାପାଇଁ ସୃଷ୍ଟି—କିନ୍ତୁ ମନେରଖନ୍ତୁ ଏପରି ଘଟଣା କରିବା ପୂର୍ବରୁ, ଆପଣ ଯେମିତି ନିଜ୍ୱଣାର ଶିକାର ନ ହୁଅନ୍ତୁ—ଧନ୍ୟବାଦ—

( ଜନାର୍ଦ୍ଦନ ବାବୁ ଚାଲିଗଲେ )

ଗୋଲକ—ବାସ୍ତବିକ୍ ରମେଶ ।

ରମେଶ—ନାଁ ଗୋଲକ । କହୁଛି ସ୍ପଷ୍ଟ କଥା—ତୋ ପୁଅ ସହିତ ମୋ ଝିଅର ବାହାଘର ହୋଇ ପାରିବ ନାହିଁ—ହୋଇପାରେ ସୁଦୂର ଅତୀତରେ ଆମେ ଦୁହେଁ ଥିଲେ ବନ୍ଧୁ—ହୁଏତ ସେତେବେଳେ ବନ୍ଧୁତାର

ଅବେଶରେ ତୋର ପୁଅ ଅଭ ମୋର ଝିଅ ହେଲେ ଏଇ ବାହାଘର ହୋଇପାରେ ବୋଲି ଗୋଟାଏ ପ୍ରଶ୍ନ ଉଠିଲା—ତୋର ପୁଅ ହେଲା—ମୋର ବ ଝିଅ ହେଲା—ଏ ସବୁ ଠିକ୍ ଗୋଲକ । କିନ୍ତୁ ପୃଥିବୀର ଗୋଟାଏ ସତ୍ୟକୁ ମିଥ୍ୟା କରି ଅମେ ଏ ବିବାହ କରି ପାରିବା ନାହିଁ ।

ଗୋଲକ—ମାନେ—

ରମେଶ—ତୁ ଧନ୍ଦା ଅଭ ମୁଁ ଗରିବ ।

ଗୋଲକ—ତୋ କଥା ଭୁଲ୍ ରମେଶ । ସୃଷ୍ଟିରେ ଏହା କେବେ ସତ୍ୟ ନ ଥିଲା—ଅଭ ଅମ ଦେଶ ଏଇ ମଣିଷଗଢ଼ା ସତ୍ୟକୁ ଭୁଲ୍ ବୋଲି ପ୍ରମାଣିତ କରିଛି । ତୁ କଣ ମହାତ୍ମାଗାନ୍ଧିଙ୍କର ଅଦର୍ଶ ଭୁଲିଯାଇଚୁ ? ଅମ ଦେଶର ବର୍ତ୍ତମାନର ଲକ୍ଷ୍ୟ ଭୁଲିଯାଇଚୁ ? ବର୍ତ୍ତମାନ ଦେଶର ପ୍ରଗତିର ଲକ୍ଷ୍ୟ ହେଲା ସମାଜବାଦ୍—

( ହଠାତ୍ ପ୍ରବେଶ କରିଛି 'ଡାକବାଲା'—ଗୋଟିଏ ରେଜିଷ୍ଟ୍ରୀ ଚିଠି ନେଇ—ପଛେ ପଛେ ପହଞ୍ଚିଛି 'ସାଧୁ'—ସାଧୁ ଚିଠିଟି ରଖିଥିଲା—

ରମେଶ—ଓଁ କାର ବାବୁଙ୍କ ଚିଠି ବୋଧେ ?

ସାଧୁ—ହଁ । ( ଚିଠି ଦିଅଇ )

ଗୋଲକ—ଓଁ କାର ବାବୁ ?

ରମେଶ—ହଁ ଅମ ଘରବାଲା—ଘରର ଦାନ୍ତ ଭଂଗା—Repair ନାହିଁ—ଧମକ୍ ଚମକ୍ ଦେଇ ଘରଭଡ଼ା ଅଦାୟ କରିବାକୁ ଗୁହେଁ—

ଗୋଲକ—ନିହାତି Hopeless,

ସାଧୁ—ଏବାବେଳକେ Hopefull sir । ଏଇ କିଅଲୁ ରମେଶବାବୁଙ୍କର ଚିଠି—ଲଟେରୀ ସବୁ ସବ ରମେଶବାବୁଙ୍କ ନାଁରେ ଉଠିଥିଲା—ଏଇ ତାର ପ୍ରମାଣ । ଖୋଦ ଲଟେରୀ ଡାଇରେକ୍ଟରଙ୍କ ଠାରୁ ଠିକ୍ ଟେଲିଗ୍ରାମ ଅସିଥିଲା—ମାତ୍ର ଖବରକାଗଜରେ ଭୁଲ୍ ବାହାରିଥିଲା । ଛପା ଭୁଲ ହୋଇ ହୁଏତ ସଂଶୋଧନ ବାହାରିବ—କାଲି—

( ପ୍ରବେଶ କରିଛନ୍ତି ସୀତା ଦେବୀ )

ସୀତା—ଜାଣେ ପରି, କେମେ ଯୁଝ୍ ଯୁଝ୍ ହୋଇ ଏଇଠିକି ଗୁଲି ଅସିଥିବ । ଅସ ଅସ ଜଲଦି ଅସ । ମୁଁ ଭିକ୍ସାଟାଏ କରି ଏକା ଏତା ଦଉଡ଼ି ଅସିଚି । ଅମ ଘରକୁ ଜଣେ କୁଣିଅ ଅସିଛନ୍ତି । ଅମ ପୁଅ ଅଜୁର ବାହାଘର ଖବର ନେଇ । ମୁଁ ତାଙ୍କୁ ଘରେ ବସାଇ ଦେଇ, ଗୁକର ଦାସିଅକୁ ତାଙ୍କର ଖବର ନବାକୁ କହି ପଳେଇ ଅସିଚି ।

ଗୋଲକ—ତମେ ଏବା ଯାଅ—ତୁଣ୍ଡି ଅନ୍ଦରେ ଚର୍ଚ୍ଚା କର । ମୁଁ ଯାଇ ଯାଉଛି—
ସୀତା—ଅର୍ଥାତ୍ ତମର ବନ୍ଧୁଙ୍କ ବନ୍ଧ ?
ଗୋଲକ—ନିଶ୍ଚୟ । ଖର୍ପ କଣ ?
ସୀତା—ଜାଣିଶୁଣି ପାନ୍ତୁଙ୍କ ଏବେ ବଡ଼ ପରିବାର ଭିତରୁ ହିଅ ସାଙ୍ଗେ ବାହାଘର କରିଦେବ ? ତା ଭବିଷ୍ୟତ ତମେ ଜାଣିଛ ତ ?
ଗୋଲକ—ନିଶ୍ଚୟ ଜାଣିଛି । ମୁଁ ତାର ବାପା ।
ସୀତା—ଅଛି ମୁଁ ତାର ମାଅ ।
ଗୋଲକ—ତମେ ଜନ୍ମ ଦେଇ ସାରିଛ ।
ସୀତା—ତା ପରେ—
ଗୋଲକ—କର୍ମ ତା ନିଜର—(ଚିଠିଟା ଟାଣି ଆଣିଲେ ଗୋଲକ)—ପଚିଶି ହଜାର ଟଙ୍କାର ମାଲିକ୍ ରମେଶ—
ସୀତା—ପୁଣି ସେଇ ଅଙ୍କ ?
ଗୋଲକ—ଅଙ୍କ ତମ ସାଙ୍ଗରେ ବାହାରେ ଜୁଟିଛି—ହୁଏ ଘର ଭିତରେ ଏବା ଥିଲା ବେଳେ—
ସାଧୁ—ହଁ ସୀତା ଦେବୀ । ପ୍ରଥମେ ଟେଲିଗ୍ରାମ୍‌ରେ ଟିକ୍ ଖବର ଆସିଥିଲା—ତାପରେ ଖବର କାଗଜରେ ଭୁଲ ନମ୍ବର ବାହାରିଥିଲା—ସେକେଣ୍ଡ ପ୍ରାଇଜ୍‌ରେ ମୋର ଟିକ୍ ନମ୍ବର ବାହାରିଥିଲା । ଖବର କାଗଜରେ ସେପର ଠିକ୍ ନମ୍ବର ନାହିଁ । ଅଛି ଲଟେରୀ ଡାଇରେକ୍ଟରଙ୍କର ଏଇ ରେଜେଷ୍ଟ୍ରୀ ଚିଠି ଆସିଛି । ବାସ୍ତବିକ ସୀତା ଦେବୀ, ରମେଶ ମାଲିକ୍ ପଚିଶ ହଜାର ଟଙ୍କାର—
ସୀତା—( ଅବା ଜାବା ହୋଇଗଲେ ) ଅବେ ଗୃହିତ କଣ ? କଣ କରିବା କହ ? ( ରିକ୍‌ସାବାଲା ପଁ ପଁ କଲା ) ରିକ୍‌ସାଟାକୁ ଫେରେଇ ଦବାକୁ କହ—ତାହାକୁ ଗୋଟେ ପଚେଇ ଦିଅ ସେ ତୁଣିଅକୁ ବିଦା କରିଦେଇ ଅସୁ—ଅବେ କଣ କରିବା କହୁନ କାହିଁକି ମ ?
ଗୋଲକ—କିଛି କରିବା ଦର୍କାର ନାହିଁ ସୀତା ଦେବୀ—ତେମେ ଠିକ୍ ଏ ମୁଣ୍ଡ ଟିକ୍ କରି ବସ । ରିକ୍‌ସାକୁ ଫେରେଇବା ଦର୍କାର ନାହିଁ । ତୁଣିଅ ବସିଥିଲେ ଚିନ୍ତା ନାହିଁ । ଓଳିଏ ଖାଇବେ ତ ଅଛି କଣ ?
ସୀତା—ମଲା ଭଲ କହୁଛ । ଓଳିଏ ଖାଇବେ ? କଣ ଗୃହିଳ ଶସ୍ତା ହୋଇଛି କି ?
ଗୋଲକ—ଶସ୍ତା ହବ—ଏବେ ତଣ୍ଡୁଳ ଜୁଟିଛି ।
ସୀତା—କହୁନ କଣ କରିବା ?
ଗୋଲକ—ତେମେ କହୁନା କଣ କରିବା ?
ସୀତା—ବୋଉ କଥା, ତେମେ କହୁନା ।

ଗୋଲକ—କେମେ କହୁନା ?

ସୀତା—ଶୁଣ, ମତେ ଏତେ ତ ଛନ୍ଦଫନ୍ଦ ଆସେ ନାହିଁ—

ଗୋଲକ—ମତେ ତ ଏତେ ଛନ୍ଦଫନ୍ଦ ଆସେ ନାହିଁ ( ପୁଣି ଭକ୍‌ସାର ଶବ୍ଦ )

ସୀତା—କହୁନ, ଭକ୍‌ସାଟା ଛାଡ଼ ଦେବା କି ନାହିଁ—

ଗୋଲକ—ହଁ, ଯିବା ଚାଲ, କୁନିଆଁଙ୍କୁ ବିଦା କରି ଦେଇ ଆସିବା ?

ସୀତା—ଆଜି କାହିଁ ଆସିବା ମ ? ଏକାବେଳେକେ ବୋହୂକୁ ନବାକୁ ତ ଆସିବା—

ଗୋଲକ—ଜାଣେ ପରା, ତମେ ବୁଝ ଯେ ହେଲେ ଟିକିଏ ବିଳମ୍ବରେ ବୁଝ—

( ଆଗ ପଛ ହୋଇ ଚାଲିଗଲେ ସୀତାଦେବୀ ଓ ଗୋଲକ ବାବୁ )

ସାଧୁ—ତାହେଲେ ରମେଶବାବୁ । ରେଖା ଦେବୀ । ମୁଁ ବି ଆସେ—କିନ୍ତୁ ବାହାଘରକୁ ଯେମିତି ମତେ ଭୁଲି ନଯାଅ—

ରେଖା—ତମକୁ କଣ କେବେ କିଏ ଭୁଲି ପାରିବଣି ନା ଆଜି ଭୁଲିବ ?

( ଚାଲି ଯାଉଥିଲେ )

ସାଧୁ—ହଁ ରମେଶ ବାବୁ । ତମକୁ ସେଇ ଅନୁରୋଧ ମୋର । ମନେଅଛି ନା !

ରମେଶ—ସାଧୁବାବୁ !

ସାଧୁ—ଲଟେରୀ ଟଙ୍କା ପାଇଲି ବୋଲି ତମେ ରକ୍ଷା ପାଇଗଲ ବୁଝିଲ ତ ? ନହେଲେ ପିଲାକୁଟୁମ୍ବ ବଢ଼େଇ କଣ ଯେ ଅବସ୍ଥା ହୋଇଥାନ୍ତା—

( ଇତରେ ରେଖା ଭିତରକୁ ଚାଲିଯାଇଥିଲେ )

କ'ଣ ଚୈତନ୍ୟ ଆସିଲା ତ ?

ରମେଶ—ବହୁତ ଦିନୁ ତ ମୁଁ ବୁଝିଥିଲି ସାର !

ସାଧୁ—ଖାଲି ବୁଝିଲେ ହୁଏନା—କାମରେ ପାଳିଲେ ହୁଏ ।

ରମେଶ—ସାଧୁବାବୁ !

ସାଧୁ—ହଁ ରମେଶ ବାବୁ ! ତମେ ମତେ ଜାଣ—ମନ ଖୋଲି—ହୃଦୟ ଖୋଲି—ପକେଟ୍ ଖୋଲି—ସବୁ ଖୋଲି—ମାନ ମୁଁ ଉପଦେଶ ଦେଇଛି—ଦେଇ ଆସିଛି—ଆଜି ବି ଦେବି—ଆଉ ଦେଉଥିବି ସେତେ ଦିନ ପର୍ଯ୍ୟନ୍ତ, ଯେତେ ଦିନ ଯାଏ—

ରମେଶ— ଓଃ ! ମତେ ଆଉ ଲଜ୍ଜା ଦିଅନା ସାଧୁବାବୁ—

ସାଧୁ—ତାହେଲେ ତମେ ବୁଝିଲ ?—ଏଥର ମୁଁ ଆସେ—

( ଚାଲିଗଲେ )

ରମେଶ—ଆରେ ରେଖା କୁଆଡ଼େ ଗଲ ? ସମସ୍ତେ ତ ଚାଲିଗଲେ । ଏଥର ଆସ, ଟିକିଏ ପାଖରେ ବସ ।

ରେଖା—କ'ଣ ସାଧୁବାବୁଙ୍କ ଆଗରେ ତମର ଏଇ ଟିକିକ ଆଗରୁ ଯୋଉ ପ୍ରତିଜ୍ଞା, ତାକୁ ଭୁଲିଗଲ ।

ରମେଶ—ରେଖା ।

ରେଖା—କଣ' କୁହ ।

ରମେଶ—ପାଖରେ ବସିବାକୁ କଣ ମନା ?

ରେଖା—ଦେଖ, ଏଥର ମୁଁ ବ ତମକୁ କହବ, ତମେ ବ ସବୁ ବୁଝ ହେଲେ ବିଳମ୍ବରେ ବୁଝ ।

ରମେଶ—ନା ନା ରେଖା—ତମେ ସବୁ ବୁଝ ଯେ, ହେଲେ ବିଳମ୍ବରେ ବୁଝ ।

ରେଖା—କଏ ବିଳମ୍ବରେ ବୁଝେ, ସେ କଥା ହସାବ କରାଣ କର ଲଭ କଣ ?

ରମେଶ—ସତ କଥା ରେଖା—ଆଜ ବହୁତ ବିଳମ୍ବ ହେଇ ଯାଉଚ—ଅଠଟି ଅତଥି ଅସିଛନ୍ତି ଆମ ଘରକୁ ( ଭିଜ୍ ଡାମୁଡ଼ ପକାଉଛ )

I Stand corrected—One is shortly expected—କନ୍ତୁ ମୁଁ ଲଜ୍ଜିତ କର କହୁଚ ରେଖା—ତମକୁ ମୋର ପ୍ରଣୟୀକୁ । ଏଣିକ ମୁଁ ତମକୁ ପାଖରେ ବସିବାକୁ ଅଉ ଡାକବ ନାହିଁ । ମୁଁ ଘୋଷଣା କରୁଚ ରେଖା—ତମ ଆଗରେ ଅଜ ଘୋଷଣା କର ଜଣାଉଚ ମୋର କଷ୍ଟଟି—ତମକୁ ମୋର ପାଖକୁ ଡାକବ ନାହିଁ—କଥା କହଲେ ଦୂରରୁ କହବ—ନ ହେଲେ ଫିଙ୍ଗ କରଅରେ—

ରେଖା—ଜାଣେ ପରା, ତମେ ବୁଝ ଯେ, ହେଲେ ଡେରିରେ ବୁଝ ।

ରମେଶ—ଡେରିରେ ବୁଝିଲେ ବ ବୁଝଚ—ଭଲ ରୂପେ ବୁଝିପାରଚ — ସ୍ନେହ ଚଣ୍ଡାଳକୁ ବ ଏ ଦୁର୍ଗନ୍ଧ ନହେଇ ରେଖା—

ରେଖା—କ'ଣ କହୁଚ ତମେ ।

ରମେଶ—ହଁ ରେଖା—ଅଜ ଥଣ୍ଡା ନୁହଁ—ପରିହାସ ନୁହଁ—ଏଇଟା ମୋ ମନ ଭିତରର କଥା — ତମକୁ ମୋର ଏ ଦେସରକାଯ ଉତ୍ତାହାର—

( ରମେଶ ଉଦ୍ପ୍ରବଣ ହୋଇ ଉଠିଥିଲେ—ରେଖା ରମେଶର ଏ ପରିବର୍ତ୍ତନ ଦେଖି ଅନନ୍ଦ ଓ ଅସ୍ଥର୍ଯ୍ୟ ଅନୁଭବ କରୁଥିଲ )

—ପରଦା—



ମୁଦ୍ରାକର—ଶ୍ରୀ ରବୀନ୍ଦ୍ରନାଥ ମହାନ୍ତି, କଟକ ପବ୍ଲିଶିଂ ପ୍ରେସ୍,
ବାଲୁବଜାର, କଟକ-୨